# ଗ୍ରାମସେବାରେ ବିଜ୍ଞାନ

ବିଜ୍ଞାନ ପ୍ରଚାର ସମିତି, ବୁର୍ଲା

ଗ୍ରନ୍ଥମନ୍ଦିର

GRAMA SEVARAE BIGYAN
(Science in the service of villages)
By Bigyan Prachar Samity, Burla
Published by Granthamandir, Cuttack-2
First Edition : 1990
Second Edition : 1995

ପ୍ରକାଶକ : ମନୋଜ କୁମାର ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ମୁଦ୍ରଣ : ପରମେଶ୍ୱର ପ୍ରେସ
ଅଲିଶାବଜାର, କଟକ-୨

ପ୍ରଥମ ସଂସ୍କରଣ : ୧୯୯୦
ପୁନର୍ମୁଦ୍ରଣ : ୧୯୯୫

ମୂଲ୍ୟ : ଟ ୩୦-୦୦
[illegible] : ଟ ୨୫-୦୦

# ମୁଖବନ୍ଧ

'ଗାଁକୁ ଫେର, ଗାଁକୁ ଫେର' ସମସ୍ତେ କହୁଛନ୍ତି । ନେତା, ମନ୍ତ୍ରୀ, କର୍ମଚାରୀ, କର୍ମୀ, ସମସ୍ତଙ୍କର ଗାଁବାଲାଙ୍କ ପାଇଁ ଦରଦ । ବେତାର, ଦୂରଦର୍ଶନ ଓ ସିନେମା କେଉଁଥିରେ ଗାଁର ଅବମାନନା ନାହିଁ । ତଥାପି ଗାଁବାଲାଏ ସହରକୁ ଆସିଲେ ଅଟକ ଯାଉଛନ୍ତି । ଯିଏ ବା ଗାଁରେ ରହୁଛି ସିଏ ଖାଲି ସହରକୁ ନିରେଖୁଛି; ଗାଁଟା କେବେ ସହର ହେବ, ସେଇ ସ୍ୱପ୍ନ ଦେଖୁଛି । ଦେଶସାରା ସବୁ ଗାଁ'ତ ସହର ହେବନି । ବସ୍ତୁତଃ ନଗ୍ନ ଗ୍ରାମବାସୀର ସ୍ୱପ୍ନ ସେମିତ ସ୍ୱପ୍ନରେ ରହିବ—ଜୀବନଯାକ ଯାହା କେବଳ ସେ ଡହଳବିକଳ ହେବ ।

ଗାଁ ସହର ହେବା ଉଚିତ ନୁହେଁ, ଏହାହିଁ ବଡ଼ ବଡ଼ ଯୋଜନା ପଣ୍ଡିତଙ୍କର ସୁଚିନ୍ତିତ ମତ । ଗାଁରେ ମହାମାରୀ ନବ୍ୟାପୁ, ଗାଁବାଲାଏ ନିରକ୍ଷର ନରହନ୍ତୁ, ଦୁଇଓଳି ପେଟପୁରା ଖାଇବାକୁ ପାଇ ସମସ୍ତେ ସୁଖଚଇନେ ଆସ୍ତ୍ରାଉନ୍ତୁ । ନଗର ଦୁଃଖ ଦାରୁଣ ସମସ୍ତେ ସୁଖରେ ରହନ୍ତୁ—ଏକଥା କିଏ ନଚାହେଁ ? କିନ୍ତୁ ହେଉନାହିଁ । ଯୋଜନା ତ' ବାଟରେ ଚାଲିଛି, ଲୋକେ ଅନ୍ୟ ପନ୍ଥା ଆଦରି ନେଉଛନ୍ତି । ସହରର କୋଠାବାଡ଼ି ପାଇଁ ମନ ବଳୁଆ ମାଳ ମାଳ, କଳକାରଖାନାରେ କୁଲିଙ୍କ କଳନା ଭରିହେଉନାହିଁ । କେଣେ ଗାଁ ପାଖରେ ଯାବାପା ବୁଝକମି ଅପନ୍ତବ ପାଳଷ୍ଟିକଣି । କେଉଁଠି କଣ ତ୍ରୁଟି ରହିଯାଉଛି, ତାକୁ ଚିହ୍ନି ସୁଧାରିବାକୁ ହେବ । ନହେଲେ 'ଗୋଡ଼ଗା ଭୋଡ଼ବା' ଗତରେ ଆମେ କଳମସ୍ତ ଦେଖି ବୁଲିଥିବୁ ।

ଖାଲି ସୁନ୍ଦର ଯୋଗାଇଦେଲେ ସବୁ ସୁଧୁରିଯିବ ନାହିଁ—ଦେଖି ବୁଝି ଦେବାକୁ ହେବ । ନହେଲେ ଲୋକେ ଦଅଁ ଖାଇ ଖଟୁଲି ଖାଇଦେବେ । ଅରେ ଏହ ଦଅଁ ଚିଲା ଲୋଗ ଗ୍ରାସିଲେ ଏ ଜାତକୁ ସୁଧାରିହେବନାହିଁ । ଗାନ୍ଧିଜୀ କହୁଥିଲେ—'ଗାଁକୁ ସର୍ବାଙ୍ଗସୁନ୍ଦର କରି ଗଢ଼ ।' ଗାଁର ବୁଣାକାର ଲୁଗା ବୁଣୁ, ଖୁବ୍ ଭଲ ଲୁଗା ବୁଣୁ, ତା'କୁ ସାହାଯ୍ୟ କର, ତା' ଲୁଗା ସହରିଆଙ୍କ ଆଖି ଝଲସାଇ ଦେଉ । କିନ୍ତୁ ତାକୁ ବ୍ୟାଙ୍କ୍ ଋଣଦେଇ ଲୁଗା-ଦୋକାନ ଖୋଲିବାକୁ ମନାଅନା କି ତାକୁ ମାଛଧରା, କୁକୁଡ଼ାପାଳନ ଓ ଝାଡ଼ୁ କାରଖାନାର ଲୋଭ ଦେଖାଅନା । ଏପରି କଲେ ଗାଁର ଅର୍ଥନୀତି ଟଳମଳ ହୋଇ ଭୁଷୁଡ଼ି ପଡ଼ିବ । ସେମାନେ ନିଜ ନିଜ ଉପରେ ନିର୍ଭରକରି ଚଳିଆସୁଥିଲେ; ଏବେ ନିଜର ସ୍ୱରସାମ୍ୟ ହରାଇ ବସିବେ । ନିଜନିଜର ବେଉସା ଉପରୁ ବିଶ୍ୱାସ ତୁଟିଯିବ । ବର୍ଷ ବର୍ଷ ଧରି ସ୍ୱୟଂସମ୍ପୂର୍ଣ୍ଣ ହୋଇ ଯେଉଁ ପରିବେଶଟି ଗଢ଼ିଉଠିଛି ତାକୁ ଆମେ ଏହାଦ୍ୱାରା ନଷ୍ଟଭ୍ରଷ୍ଟ କରିଦେବା ।

ଗ୍ରାମସେବାର ସାଧାରଣ ଏ ପୁସ୍ତକର ବିଷୟବସ୍ତୁ ନୁହେଁ—ବରଂ ଏକ ସ୍ୱୟଂ-ସମ୍ପୂର୍ଣ୍ଣ ଗ୍ରାମରେ ବିଜ୍ଞାନ କିପରି ପ୍ରୟୋଗ କରାଯାଇପାରେ ତାହା ହିଁ ଆଲୋଚନା କରାଯାଇଛି । ଯେଉଁ କେତେକ ବିଷୟ ବିବାଦୀୟ ନୁହେଁ ତାହା ହିଁ କେବଳ ଆଲୋଚିତ ହୋଇଛି ଏ ପୁସ୍ତକଟିରେ । କେଉଁ ଯୁଗରୁ କେତୋଟି ଅନ୍ଧବିଶ୍ୱାସ ମୋହାଚ୍ଛନ୍ନ କରିରଖିଛି ଗାଁକୁ । ସେ ବିଷୟରେ ଲୋକଙ୍କୁ ଚେତେଇ ଦେବାକୁ ହେବ । ଗାଁର ସାମାଜିକ ସ୍ୱାସ୍ଥ୍ୟ ଆଜି ବିପର୍ଯ୍ୟସ୍ତ, ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ତାହାର ଏଠି ଆଲୋଚନା ହୋଇଛି । ଗାଁକୁ ବିଜୁଳି ଯୋଗାଇବାକୁ ହେବ, ସବୁଦିନ ପାଇଁ ଡିବି ଲଣ୍ଠନ ଜାଳି ସେମାନେ ସନ୍ତୁଷ୍ଟ ରହିବେନାହିଁ । ଘରେ ଘରେ ଆଜି ଜାଳେଣିକାଠ ନିଅଣ୍ଟ, ତାଙ୍କ ପାଇଁ ଜଙ୍ଗଲ ଯୋଜନା ଓ ବିକଳ୍ପଶକ୍ତି ବିଚାର କରିବାକୁ ହେବ ।

ଗ୍ରାମର ପଶୁସମ୍ପଦର ଉନ୍ନତି ନହେଲେ ସେମାନେ ପରମୁଖାପେକ୍ଷୀ ହେବେ । କେଉଁ ଯୁଗରୁ ସେମାନେ ଟୋଟକା ଔଷଧ ଉପରେ ନିର୍ଭରକରିଆସିଛନ୍ତି—ଏବେ ଡାକ୍ତରଖାନାର ଭେଳିକରେ ସେସବୁ ଲୋପ ପାଇବାକୁ ବସିଲାଣି । ଯାହା ଏବେବି ଦରକାରୀ ସେମାନଙ୍କୁ ଚିହ୍ନେଇ ଦେବାକୁ ହେବ । ମା' ଓ ଶିଶୁର ଯତ୍ନନେବା ସହିତ ପରିବାରକଲ୍ୟାଣ ଯୋଜନାକୁ ଲୋକପ୍ରିୟ ନକରାଇଲେ ସବୁ ଯୋଜନା ଭୁଶୁଡ଼ି ପଡ଼ିବ । ତା'ଛଡ଼ା ଗାଁଦାଣ୍ଡ, ବାଡ଼ିବଗିଚା ଓଳାଇ ଆବର୍ଜନାର ବନ୍ଦୋବସ୍ତ କଲେ ସ୍ୱାସ୍ଥ୍ୟହାନି ନହୋଇ ସମ୍ପଦ ବଢ଼ିପାରିବ । ବିଦ୍ୟାଳୟରେ ସ୍ୱାସ୍ଥ୍ୟସେବା ଅନିବାର୍ଯ୍ୟ । ପୁରୁଷ ପୁରୁଷ ଧରି ଗାଁରେ ଯେଉଁ ଯାନଯାତ୍ରା ଓ ପର୍ବପର୍ବାଣୀ ଚାଲିଆସିଛି ତାକୁ ଅତୁଟ ନରଖିଲେ ଜୀବନ ଦୁର୍ବିସହ ହୋଇପଡ଼ିବ । ଏସବୁକୁ ଲକ୍ଷ୍ୟ ରଖି ଲେଖକମାନେ ତାଙ୍କ ଲେଖାରେ ଉପଯୁକ୍ତ ଉପାଦାନ ଯୋଗାଇଛନ୍ତି ।

ଲେଖକମାନଙ୍କର ମୌଳିକ ଢଙ୍ଗ ଓ ଶୈଳୀ ଯଥାସମ୍ଭବ ଅକ୍ଷୁଣ୍ଣ ରଖି ପୁସ୍ତକଟି ସମ୍ପାଦିତ ହୋଇଛି । ଏଥିରେ ବୁର୍ଲା ବିଜ୍ଞାନ ପ୍ରଚାର ସମିତିର ବିଭିନ୍ନ କର୍ମକର୍ତ୍ତା ଓ ସଭ୍ୟ-ମାନେ ସମୟୋଚିତ ସାହାଯ୍ୟ କରିଛନ୍ତି । ପୁସ୍ତକଟିର ପ୍ରକାଶନ ପାଇଁ ଗ୍ରନ୍ଥମନ୍ଦିର ଦାୟିତ୍ୱ ବହନ କରିଥିବାରୁ ସମିତି ତାଙ୍କଠାରେ କୃତଜ୍ଞତା ପ୍ରକାଶ କରୁଛି ।

ଜ୍ଞାନମଣି ସାମଲ
ପ୍ରକାଶନ ସମ୍ପାଦକ
ବିଜ୍ଞାନ ପ୍ରଚାର ସମିତି, ବୁର୍ଲା ଶାଖା,
ସମ୍ବଲପୁର

# ସୂଚୀପତ୍ର

---

# ଏବେ ବି ସେମାନେ ବିଶ୍ୱାସର ଜାଲରେ

[ ଯେଉଁ ସରଳବିଶ୍ୱାସ ଏବଂ ଅନ୍ଧବିଶ୍ୱାସରେ ପରିଚାଳିତ ହୋଇ ସେମାନଙ୍କୁ ଧର୍ମାନ୍ଧତା, ଗୋଷ୍ଠୀବିବାଦ ଓ ସାଂପ୍ରଦାୟିକତା ଭିତରକୁ ଟାଣିନେଉଛି, ସେଥିରୁ ସେମାନଙ୍କୁ ମୁକୁଳାଇବାକୁ ହେବ । ]

**ଧର୍ମର ଭେଳକି—**

ହଁ, ଏବେ ବି ସେମାନେ ବିଶ୍ୱାସ କରନ୍ତି ମୁଖିଆଙ୍କଠାରୁ ମୁଖ୍ୟମନ୍ତ୍ରୀ ପର୍ଯ୍ୟନ୍ତ, ଗାଁ ରକ୍ଷୀଙ୍କଠାରୁ ଜଳେଶ୍ୱର ପର୍ଯ୍ୟନ୍ତ । ସମସ୍ତଙ୍କଠାରେ ତାଙ୍କର ଅଦ୍ଭୁତ ବିଶ୍ୱାସ । ତାହାକୁ ସେମାନେ ଅବିଶ୍ୱାସ କରିପାରନ୍ତି ନାହିଁ । କେଉଁ ଯୁଗରୁ ପୁରୁଷାନୁକ୍ରମେ ଗଢ଼ି ଆସିଛି ଏ ବିଶ୍ୱାସ । ଏଥିରୁ ଗଢ଼ିଉଠିଛି ପରମ୍ପରା, ସଂସ୍କୃତି ଓ ଧର୍ମ । କେବଳ ଯୁକ୍ତିତର୍କ ବଳରେ ଏହା ତାଙ୍କଠାରୁ ଛଡ଼ାଇ ନେବା ସହଜ ନୁହେଁ । ପ୍ରତି ବିଶ୍ୱାସର ନିଜର ଏକ ତର୍କ ଅଛି । ସେହି ତର୍କକୁ ପ୍ରତିହତ କଲାପରି ପ୍ରତ୍ୟକ୍ଷ ପ୍ରମାଣ ନଯୋଗାଇଲେ ଫଳ ବିପରୀତ ହେବ । ବିଶ୍ୱାସରେ ଯେ ବୁଡ଼ିରହିଛି ସେ ବିଚାରଶକ୍ତି ହରେଇ ବସିଥାଏ, ତା'ର ଭଲ ମନ୍ଦ ତଉଲି ଦେଖିବାର ଆଗ୍ରହ ନଥାଏ । ଠକାଠକି ହେଲେ ବି ସେ ତାହାର ବିଶ୍ୱାସରୁ ଇଞ୍ଚେ ବି ଟଳେନା । କ୍ଷୁଧା, ତୃଷା ରୋଗ ଯନ୍ତ୍ରଣାରେ ଛଟପଟ ହେଲେ ବି ବିଶ୍ୱାସ ଜିନିଷକୁ ସମ୍ବଳ କରି ସେମାନେ ଭାଗ୍ୟଦେବୀଙ୍କ ଅନୁଗ୍ରହ ପାଇଁ ଅପେକ୍ଷା କରିଥାଆନ୍ତି । ତାଙ୍କଠାରୁ ସେଇ ବିଶ୍ୱାସ ଜିନିଷ ଛଡ଼ାଇନେବାକୁ ମନ ବଳେନା । କିନ୍ତୁ ଆଉ ଉପାୟ ନାହିଁ । ଯେଉଁ ସରଳ ବିଶ୍ୱାସ ଏବଂ ଅନ୍ଧବିଶ୍ୱାସରେ ପରିଚାଳିତ ହୋଇ ସେମାନଙ୍କୁ ଧର୍ମାନ୍ଧତା, ଗୋଷ୍ଠୀବିବାଦ ଓ ସାଂପ୍ରଦାୟିକତାକୁ ଭିତରକୁ ଟାଣିନେଉଛି ସେଥିରୁ ସେମାନଙ୍କୁ ମୁକୁଳେଇବାକୁ ହେବ ।

ସେମାନେ ଜଣେ ଦୁଇଜଣ ନୁହନ୍ତି, ପ୍ରାୟ ୬୦ କୋଟି ଲୋକ । ସେମାନଙ୍କ ମଧ୍ୟରେ ଅଧାଅଧି ଅକ୍ଷର ଚିହ୍ନି ନାହାନ୍ତି । ଭାରତର ୧୦ ହଜାର ପତ୍ରପତ୍ରିକା ଓ ୮୩୪ ଦୈନିକ ସମ୍ବାଦପତ୍ରଗୁଡ଼ିକର ଶତକଡ଼ା ୯୩ ଭାଗ କେବଳ ସହରରେ ବିକି ହୁଏ । ଗାଁଗଣ୍ଡାରେ ୧୦୦ ଜଣଙ୍କ ମଧ୍ୟରୁ ଖୁବ୍ ହେଲେ ଜଣେ ଖବରକାଗଜ ପଢୁଥିବ । ଆମର ଧାରଣା ସେମାନେ ରେଡ଼ିଓ ଶୁଣୁଥିବେ । ମାତ୍ର ହିସାବରୁ ଜଣାପଡ଼େ ଯେ ଶହେଜଣଙ୍କ ମଧ୍ୟରୁ ଜଣେ ମାତ୍ର ରେଡ଼ିଓ ଶୁଣେ । ତେଣୁ ଏବେ ବି ସେମାନେ ଆମଠାରୁ ଦୂରେଇ ରହିଛନ୍ତି । ତାଙ୍କ ପିଲାଙ୍କର ହନୁହାଡ଼ ବାହାରି ପଡ଼ିଲଣି, ଆଖିକୋଣା କୋରଡ଼ ଭିତରେ ପଶିଲଣି, ପେଟ ଅଣ୍ଟିଆ ଢୋଲ ଫୁଲିଲଣି । ହାଡ଼ଗୁଡ଼ାକ ଚମ ଘୋଡ଼ା ରହିଛି । ତଥାପି ସେମାନେ ପଞ୍ଚବାର୍ଷିକ ଯୋଜନା ଉପରେ ଭରସା ରଖିନାହାନ୍ତି । ତାଙ୍କର ଧାରଣା, ଯିଏ ଅଣ୍ଡିରପୁଅଙ୍କୁ ହାତ ଯୋଗାଇଛି ସେ ନିଶ୍ଚୟ ତାଙ୍କ ପେଟକୁ ଭାତ ଯୋଗାଇବ । ଏମିତି ବିଶ୍ୱାସ ରଖି

ସେମାନେ ଲଢ଼ୁଛନ୍ତି । ଆମର ଯେତେ ଯାହା ଯୋଜନା ଗଢ଼ା ହେଉଛି ସ୍ୱର୍ଗ ସ୍ୱପ୍ନ ସେଗୁଡ଼ିକ ଭୁଷୁଡ଼ି ପଡ଼ୁଛି । ଆମର ବୈଜ୍ଞାନିକ ଚିନ୍ତାଧାରା, କାରିଗରୀ କୌଶଳ ବା ବୈଷୟିକ ଯୋଜନା ତରୁ କିଛି ହାର୍ ମାନିବାକୁ ବସିଲଣି । ତାଙ୍କ କବ୍ଜାରୁ ତାଙ୍କୁ ଓହରେଇ ନ ଆଣିଲେ ଆମର ଆଉ ଅନ୍ୟ ଉପାୟ ନାହିଁ । ଏବେ ସରକାରଙ୍କ ସମର୍ଥିତ ଯୋଜନା ପଢ଼ିବାର ୧୯୮୫ ଅନ୍ତ ପର୍ଯ୍ୟାରେ ଦେଶର ମାନ୍ୟଗଣ୍ୟ ନେତା ଓ ପଦାଧିକାରୀମାନେ ମତ ଦେଉଛନ୍ତି । ଆଉ କେତେଦିନ ଆମେ ସେମାନଙ୍କୁ ଧର୍ମର ଭେଳକି ଦେଖାଇ ଭୁଆଁ ବୁଲେଇବା ?

**ସାପ ପୂଜାପିଲ—**

ଆମେ ଏଣେ ସବୁ ରୋଗର ପ୍ରତିକାର ଲାଗି ଦୁର୍ଦାନ୍ତ ଜର୍ମକୁ ଆୟତ୍ତ କରିବାକୁ କୋଟି କୋଟି ଟଙ୍କା ଖର୍ଚ୍ଚ କରୁଛୁ । ହିସାବରୁ ଜଣାପଡ଼େ ଯକ୍ଷ୍ମାରୋଗରେ ତାଙ୍କର ମୃତ୍ୟୁ ସର୍ବାଧିକ । ତାପରେ ୨ ନମ୍ବର ମହାମାରୀ ହେଲା ପେଟ ରୋଗ ଓ ଛାତି ରୋଗ । ୧୯୭୩ ମସିହାର ହିସାବରୁ ଜଣାଯାଏ ଗାଁରେ ୧୩,୧୫୦କୁ ଚିକିତ୍ସା କରିବାକୁ ଜଣେ ଡାକ୍ତର ଥାନ୍ତି । ତେଣୁ ସେମାନେ ଏବେ ବି ଝଡ଼ାଫୁଙ୍କାରେ ବିଶ୍ୱାସ ରଖିଛନ୍ତି । ସାପ କାମୁଡ଼ିଲେ ସେଠି ଗୁଣିଆ ମନ୍ତ୍ର ଆଉଡ଼େଇ ସାପକୁ ଡାକିଆଣେ । ସାପ ପୂଜାପିଲଙ୍କି ପରି ଗୁଣିଆ ବୋଲି ମାନି ତା' ବିଷ ଶୋଷି ନେଇ ବୁଲିଯାଏ । ଏ ସାପ ବିଷ ହରଣ ବହୁ ପରୀକ୍ଷିତ ବୋଲି ସେମାନେ ଶୁଣି ଆସୁଛନ୍ତି । କେତେକ ଖୋଦ୍ ନିଜେ ଦେଖିଛନ୍ତି ବୋଲି କହନ୍ତି ।

**ଗଞ୍ଜେଇର ଟଙ୍କଣା—**

ଜଣେ କହନ୍ତି ତାଙ୍କ ଗାଁ ଝଙ୍କାଣ ବାବାଜୀ ଝାଡ଼ଫୁଙ୍କ କୁଆଡ଼େ ମ୍ୟାଲେରିଆ ଜରକୁ ହଟାଇ ଦେଇଛନ୍ତି । ତାଙ୍କର ଦରକାର କେବଳ ତାଳ ପାଣି, ମେଷାଏ ଲୁଣ ଓ ଚନ୍ଦନଖଣ୍ଡେ ବୁଟା । ଝଙ୍କା ବାବାଜୀ କୁଆଡ଼ୁ ଆସିଲେ ଗାଁରେ କେହି ଜାଣନ୍ତି ନାହିଁ । ନଈକୂଳିଆ ଶ୍ମଶାନ ଦଣ୍ଡାରେ ସେ ମଠ କଲେ । ସଜନା ଚୂଳି ପରି ଜଟା ପାଦଯାଏ ଲମ୍ବିଛି, ବୁଲିବାକୁ ଅଡ଼ୁଆ ହେବ ବୋଲି ତାକୁ ଟେକେଇ ଆକ ରରେ ମୁଣ୍ଡେଇଛନ୍ତି । ବେକଠାରୁ ପାଦଯାଏ ଗେରୁଆ ବସ୍ତ୍ରରେ ଘେରା । ପ୍ରତ୍ୟୁଷେ ଉଭର କଡ଼ାଲଗା ଲୁହା ଚିମୁଟାବାଡ଼ି ଝଣ ଝଣ କରି ସେ ବାଟ ବୁଲନ୍ତି । ନଜାଣିକି କେହି ତାଙ୍କ ହାବୁଡ଼ରେ ପଡ଼ିଲେ ଭେଟଣା ହୋଇସିବ । ପିଲାଙ୍କୁଆଙ୍କ ଝଟପଟରେ ସେ କୁଆଡ଼େ ବସି ଜାଣିବାର—ଆମ ଡାକ୍ତର ବୁଝାରେ ଶିଶୁରୋଗ ବିଶେଷଜ୍ଞ । ତେଣୁ ସପ୍ତାହରେ ଜଣକ ଘରକୁ ଥରେ ଆସିଲେ ବି ଯେଉଁ ମୁଠିଏ ମିଳିଥାଏ ସେଥିରେ ଠାକୁର ପୂଜା ଓ ଗଞ୍ଜେଇ ଖର୍ଚ୍ଚ ଚଳେ । ତାଙ୍କର ଚେଲା ଲୋଡ଼ା ନାହିଁ, ତଥାପି ସନ୍ଧ୍ୟାକୁ ଚିଲମର ଦମ ଟାଣିବାକୁ ଅନେକ ଚେଲା ଜୁଟିଥାନ୍ତି । ପରଦିନ ସକାଳୁ ସେଇ ଚେଲଙ୍କ ଗୁଣରେ ବାବାଙ୍କ ଖ୍ୟାତି ରଟିଥାଏ ।

ଜର ଓ ଝାଡ଼ାର ପ୍ରତିକାର ପାଇଁ ଝଙ୍କା ବାବା ଯେମିତି, ହଜି ଯାଇଥିବା ଜମ୍ମା ରେସ୍ତ କନକ ମିଳିବା ପାଇଁ ବାଘମରା ବାବା ସେମିତି ପ୍ରତ୍ୟକ୍ଷ । ବାଘମରା ମଠ ଗାଁର

ଏମ୍ବ୍ରୁ ଶୁଣାନରେ । ବାପମାଆ ବାବା ଜନ୍ମ ଅକାଣ ବାବାଙ୍କ ଓଲଟା । ଅକାଣ ବାବାଙ୍କ ମୂର୍ତ୍ତିରେ ମୁକୁଟ ଜଟା ଥିଲ ବେଳକୁ ଏହାଙ୍କ ମୁଣ୍ଡ ଲଣ୍ଡା । ତାଙ୍କ ସାରା ଶରୀର ଆବୃତ ହୋଇଥିଲ ବେଳକୁ ଏ ସନ୍ଥ ସାମାନ୍ୟ କନା ବା କୌପୀନ ଦ୍ୱାରା ଆବଶ୍ୟକୀୟ ଅଂଶକୁ ଆବୃତ କରି ଲଙ୍ଗଳା ରହନ୍ତି । ଆଗେ ଗୋରୁଗାଈ ହଜିଥିଲେ ମାତ୍ର ପାଞ୍ଚପଇସାର ଗଞ୍ଜେଇ ଦେଲେ ସେ ଲୋଡ଼ୁଥିଲେ । ଏବେ ସୁଲଭ ଦୋକାନରେ ଗଞ୍ଜେଇ ମିଳୁ ନଥିବାରୁ ଦେବ ମୂଲ୍ୟର ମାତ୍ରା ସାମାନ୍ୟ ବଢ଼ାଇଛନ୍ତି । ଏହିପରି ଭିନ୍ନ ଭିନ୍ନ ବେଶରେ ଅଲଗା ଅଲଗା ଭେଳିକି ଦେଖାଇ ଏମାନେ ବାଙ୍କ ମନ ଭୁଲେଇ କରୁଛନ୍ତି । ଏମାନଙ୍କ ମାହାତ୍ମ୍ୟ ଏବେ ଅଦ୍ଭୁତ ପ୍ରସାରିତ ହେଲଣି । ସହରର ସାହି ବସ୍ତିକୁ ଆସି ଏମାନେ ଏବେ ପ୍ରବଚନ ଦେବା ଆରମ୍ଭ କରିଛନ୍ତି ।

ପଥ୍ୟାପଥ୍ୟ କଥା କ'ଣ କହିବା ? ସବୁ ବାରମାନଙ୍କର ପ୍ରକୋପ ଗାଁଗଣ୍ଡାରେ । ସୋମବାର ଶିବଙ୍କ ବାର, ଅଇଁଷ ଘରେ ପଶିବ ନାହିଁ । ଗୁରୁବାର ମା' ଲକ୍ଷ୍ମୀଙ୍କର, ବଜାରରେ ତ ବଳିବଟା ବନ୍ଦ ହେଲଣି । ରବିବାର ଦିନ ଶାମ୍ବ ସୂର୍ଯ୍ୟପୂଜା କରୁଥିଲେ; ଏ ଦିନଟି ପାଳିଲେ କୁଷ୍ଠ ରୋଗର ଆଶଙ୍କା ନାହିଁ । ଶନିବାର ଶନିଙ୍କର, ସେ ମହାପ୍ରକୋପୀ ଅବଶିଷ୍ଟ ୩ଟି ବାର ମଧ୍ୟରୁ ଶୁକ୍ରବାର ସନ୍ତୋଷୀ ମା'ଙ୍କ ପାଇଁ । ଅନ୍ୟ ଦୁଇଟି ବାରକୁ କୌଣସିମତେ ଚଳାଇ ନେଲେ ନବମିଷାଣୀ ଭାଳିକାରେ ଶହେ ବର୍ଷ ପରମାୟୁ ଥୁଆ । ଏବେ ଏକ ବସ୍ତିରେ ଘଷ୍ଟି ଗୋଟିଏ ଡାକ୍ତରଙ୍କ ତଥା ମନ କୁକୁଡ଼ା ଅଣ୍ଡାଟିଏ ଖାଇବାକୁ ମନକଲା । ସ୍ତ୍ରୀ କହିଲା, ଶ୍ରାବଣ ମାସରେ ଜୀବହତ୍ୟା କରିବା ନାହିଁ । ଉକ୍ତ ସ୍ୱାମୀର କୁରାଢ଼ୀ ଚୋଟରେ ବିଚାରର ପ୍ରାଣ ଗଲା । ଏହା ଗୋଟିଏ ମାତ୍ର ଉଦାହରଣ, ହେଲେ ବି ଏହା ବିଂଶ ଶତାବ୍ଦୀର ।

**ଆତ୍ମା ଓ ଦେହର ସମ୍ପର୍କ—**

ଆଉ ଗୋଟିଏ କଥା ପ୍ରସଙ୍ଗରେ କହି ଦେବାକୁ ଚାହେଁ । ତଳେ ନାଳବନ୍ଧ ଦେଇ ମୁଁ ଘରକୁ ଫେରୁଛି । ଆମ ଗାଁ ମାଉସୀ ମୋ ହାତ ଧରି ମୋତେ ଡାକପକାଇଲେ । ଦେଖିଲି ବେଳକୁ ସେ ଅଧକେଜିଆ ମାଛଟିଏ ଗୋଡ଼ରେ ଚାପିଛନ୍ତି । ତାକୁ ମାରିବା ପାଇଁ ମୋତେ ତାଙ୍କର ସକଳ ଅନୁରୋଧ । କାରଣ ତାଙ୍କ ବାବା ଜଣେ ବଡ଼ ଅଧ୍ୟାପକ ଓ ଉଦାର ସାଧକ । ତାଙ୍କ ମତରେ ମାଛ ମାରିବା ମହାପାପ; କିନ୍ତୁ ଖାଇବା ଦୋଷାବହ ନୁହେଁ ।

ଦେଖିଲି ମାଛ ପାଣିକୁ ଯିବାପାଇଁ ଛଟପଟ, ମାଉସୀ ତାକୁ ମୁକ୍ତିକୁ ଉଠାଇବା ପାଇଁ ଛଟପଟ । ମୁଁ କାହାରିକୁ ସାହାଯ୍ୟ ନକରି ବାଟେ ବାଟେ ଚାଲିଲି । ପରେ ଶୁଣିଲି, ମାଉସୀଙ୍କ ଜିହ୍ୱା ଲାଳସା ଚରିତାର୍ଥ ହେଲା । ମାଛଟି ବହୁ ସମୟ ଝୁରିରେ ଓ ଶୁଖିଲରେ ଅଟକି ଆପେ ଦେହତ୍ୟାଗ କଲା ।

କେତେକ ରୋଗରେ ଡାକ୍ତର କହନ୍ତି ବଡ଼ ମାଛ ନଖାଇ ସାନ ମାଛ ଖାଅ । ଆଉ ଜଣେ ବାବା କହୁଥିଲେ ପାରିବତ ବଡ଼ ମାଛ ଖାଅ, ସାନ ମାଛ ଖାଇବା ଅପରାଧ ।

ଗୋଟିଏ ପ୍ରାଣୀର ସନ୍ତୋଷ ପାଇଁ ଲକ୍ଷେ ପ୍ରାଣୀ ହତ୍ୟା କରିବା ଉଚିତ୍ ନୁହେଁ । ଏ ବୈଜ୍ଞାନିକ ଯୁକ୍ତି ବାବାଙ୍କର ନିକଟ ହେ'ଲ ତାଙ୍କ ଚେଲାଏ ବାହାସ୍ଫୋଟ ମାରି କହନ୍ତି ।

ଆତ୍ମା ଓ ଦେହ ସମ୍ବନ୍ଧରେ ତ ଏମାନଙ୍କର ଅଦ୍ଭୁତ ଧାରଣା । ଶବ ପୋଡ଼ି ନ ହେଲେ ତା' ଉପରେ ନାନା କଷ୍ଟ ମନ୍ତବ୍ୟ । ପୋଡ଼ିଲା ବେଳେ ଶବରୁ କୁଆଡ଼େ ଉଜ୍ଜ୍ୱଳ ଆଲୋକ ଭୂତ୍‌କରି ସ୍ୱର୍ଗକୁ ଉଠିଯିବା କେତେକ ସ୍ୱଚକ୍ଷୁରେ ଦେଖିଛନ୍ତି । ଏବେ କେନ୍ଦ୍ର ସରକାରଙ୍କ ଦୂରଦର୍ଶନରେ ଏକ ତର୍କସଭାର କାର୍ଯ୍ୟକ୍ରମ ଥିଲା । ବିଷୟ ହେଲା—ଆଧ୍ୟାତ୍ମିକତା ଏତ ଫମ୍ପା ଆଓ୍ୱାଜ କି ? ବିରୋଧରେ କହୁଥିବା କଲେଜ ପଢ଼ୁଆ ବକ୍ତା ଆତ୍ମା ସମ୍ବନ୍ଧରେ ଏକ ବୈଜ୍ଞାନିକ ପ୍ରମାଣ ଦେବାକୁ ଯାଇ କହିଲେ—ଆମେରିକାର ବୈଜ୍ଞାନିକମାନେ ପରୀକ୍ଷା କରି ଦେଖିଛନ୍ତି ଶବର ଓଜନ ଜୀବନ୍ତ ଶରୀରଠାରୁ କମିଯାଉଛି । ଏ ଓଜନ ହ୍ରାସ ତଥା ବସ୍ତୁର କଲେ ଆମେ ଆତ୍ମାକୁ ଅସ୍ୱୀକାର କରିବା କିପରି ? ତର୍କସଭାର ସଂଯୋଜକ ନାନା ଶ୍ଲୋକ ଆବୃତ୍ତି କରି ଏହାକୁ ସମର୍ଥନ କଲେ । ଆମ ଶାସନକଳର ବୁଦ୍ଧି-ଉତ୍କର୍ଷୀମାନଙ୍କ ପାଇଁ ଏହା ତ ଏକ ବିଜ୍ଞାନଭିତ୍ତିକ ତତ୍ତ୍ୱ ପରିବେଷଣ ।

## ବଣ୍ଟାଘର ବଳୀଷିକା—

ଗାଁରେ ଯାହାର କୋଠାଘର ନାହିଁ ସେ କରିପାରିବ ନାହିଁ । କାରଣ ଲୋକଙ୍କର ଧାରଣା କୋଠାର ମୂଳଦୁଆ ପଡ଼ିବା ଓ ଛାତ ପଡ଼ିବା ମଧ୍ୟରେ ନିଶ୍ଚୟ କେତେ ମୁଣ୍ଡ ଯିବେ । ନୂଆ କରି ନଡ଼ିଆଗଛ ବାଡ଼ିରେ ପକାଇଲେ ଗଛ ଚଅଁର କାଢ଼ିଲା ବେଳକୁ କଅଁଳିଆ ତୁଅମାନେ ଦାନ୍ତ କାଟିବେ । ଏପରିକି ଅମୃତଭଣ୍ଡା, ସଜନା ଗଛ ଓ ଜାଗିଳା ଲେମ୍ବୁ ପାଇଁ ମଧ୍ୟ କାରଣ ଅଛି ।

ପ୍ରାୟ ୫୦ ବର୍ଷ ତଳେ ଗାଁ ଛିଣ୍ଡ ରେବତୀର ପାଠପଢ଼ା ସମ୍ବନ୍ଧରେ ଫକୀରମୋହନ ଯେଉଁ ଗପ ଲେଖିଥିଲେ ଏବେ ବି କେତେକ ଗାଁରେ ତାହା ସତଘଟଣା । କୁଆଡ଼େ ଝିଅପିଲା ବହି ବୋଲିଲାବେଳକୁ ହରିବୋଲ୍ ପଡ଼ି ଘରୁ ଶବ ବାହାରିବ । ମନ୍ତ୍ର ବଳରେ ବର୍ଷା କରାଇବାକୁ କେତେକ ରାଜ୍ୟ ସରକାର ସମର୍ଥନ ଜଣାଇଲେଣି । ଏ ସମ୍ବନ୍ଧରେ ଗାଁବାଲାଙ୍କୁ ଅପବାଦ ଦେବା କାହିଁକି ?

ଜାତକ ବା ଜ୍ୟୋତିଷୀଙ୍କ ମହିମା କହି ବସିଲେ ତ ପୋଥି ପୁରାଣ ହେବ । ଗାଁଗଣ୍ଡାରେ ଜ୍ୟୋତିଷୀଙ୍କ ଅନୁମତି ବିନା ଯାତ୍ରା ନିଷେଧ । ଠିକ୍ ପ୍ରୋଗ୍ରାମ୍ ନକଲେ କମ୍ପ୍ୟୁଟର ଭୁଲ୍ କରିଯାଏ । କିନ୍ତୁ ଏଠି ଖାଲି ସୁଲ ନାଁ କହିଦେଲେ ଜ୍ୟୋତିଷୀଙ୍କୁ ଠନପୁର କଥା ଜନ ଜଳ ଦଶେ । ଅବଶ୍ୟ ବୃଜଶ୍ଚ, ବଦଳ, ପଚୋନ୍ନତ ଓ ଅବଯବ ଗ୍ରହଣ ଯେପରି ଭୂପ୍ଲବନ୍ ନିତ ନିୟମ ନମାନି ଆସୁଛି ଅତରୁଦ୍ଧ କହିବାରେ କମ୍ପ୍ୟୁଟର ଠିକ୍‌ଦିବ, ପାରିବନି ଜ୍ୟୋତିଷେ ପାରିବେ । କେବଳ ବିବାହ ବ୍ରତ ନୁହେଁ, ଡାକ୍ତରଖାନାରେ ଭର୍ତ୍ତି ହେବା, ଔଷଧ ଖାଇବା ପଥ୍ୟ ଆରମ୍ଭ କରିବା ପରି ଯେ କୌଣସି କାର୍ଯ୍ୟ ଗ୍ରହ ନକ୍ଷତ୍ରର ଅବସ୍ଥାନ ଓ ଶୁଭବେଳା ଉପରେ ନିର୍ଭର କରୁଛି । ନିମଗଛରୁ କ୍ଷୀର ଝରିବା, ମାଙ୍କଡ଼ର ଭବିଷ୍ୟତବାଣୀ, ଡାକ୍ତର-

ଖାଇବାକୁ ନ ପାଇ ଶୀର୍ଣ୍ଣ ହୋଇ ପଡ଼ିଥିବା ରୋଗୀଙ୍କ ପାଇଁ ଦୁଗ୍ଧ, ଅନୁନ୍ନତ ଦେଶର ଭାରପାତ ତଥା ଖବରକାଗଜରେ ବାରମ୍ବାର ଛପି ଆମେ ଏଇ ସରଳ ଲୋକଙ୍କୁ ପ୍ରତାରିତ କରୁଛୁ।

## ପାପୀ ନା ତ୍ୟାଗୀ ?

ଦିଲ୍ଲୀରେ ନିରପେକ୍ଷ ସମ୍ମିଳନୀ ଉଦ୍‌ଘାଟନ କଲାବେଳେ କାଷ୍ଟ୍ରୋ ୧୯୮୩ରେ କହିଥିଲେ ପୃଥିବୀରେ ବର୍ଷକୁ ଯେତିକି ଲୋକ ଅନାହାରରେ ବା ପୁଷ୍ଟିହୀନ ଖାଦ୍ୟ ଖାଇ ମରନ୍ତି, ପ୍ରତି ମୃତବ୍ୟକ୍ତି ପାଇଁ ମିନିଟିଏ ନୀରବ ପ୍ରାର୍ଥନା କଲେ ଆସନ୍ତା ୨୦୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଆମେ ଆଉ ପାଟି ଖୋଲିପାରିବା ନାହିଁ।

ଦାରିଦ୍ର୍ୟ ହେତୁ ବର୍ଷକୁ ଯେତିକି ଲୋକ ମରନ୍ତି ହିରୋସୀମାର ଭୟଙ୍କର ଆଣବିକ ବିସ୍ଫୋରଣ ପରି ୧୦୦ଟି ଦୁର୍ଘଟଣାରେ ବି ସେତେ ଲୋକ ମରିବେ ନାହିଁ।

ପୃଥିବୀର ବୈଜ୍ଞାନିକଙ୍କ ସଂଖ୍ୟା ତୁଳନା କରି ଦେଖିଲେ ଭାରତର ସ୍ଥାନ ତୃତୀୟରେ। କିନ୍ତୁ ଭିକାରୀ ଲୋକଙ୍କ ସଂଖ୍ୟା ତାଲିକାରେ ଭାରତ ଏବେବି ଶୀର୍ଷସ୍ଥାନ ଦଖଲ କରିଛି। ଆମର ମହାକାଶ ବିଜ୍ଞାନ ଓ ପରମାଣୁ ଶକ୍ତି ପାଇଁ ଆମେ ଯେତେ ଗର୍ବ କରୁଛୁ ଭିକାରୀଙ୍କ ପାଇଁ ଆମ ମୁଣ୍ଡ ସେତିକି ତଳକୁ ନଇଁଯାଉଛି।

୧୯୬୭ର ବିଜ୍ଞାନ କଂଗ୍ରେସ ଅଧିବେଶନରେ ଗାଁ ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ମୋଚନ ସଂକ୍ରାନ୍ତରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ କହିଥିଲେ—ସମସ୍ୟା କ'ଣ ସତରେ ଲୋପପାଏ ? ତାହା କେବଳ ବଦଳିଯାଇ ନୂଆ ରୂପ ନିଏ। ବଦଳାଇବାରେ କେବଳ ବିଜ୍ଞାନ ସାହାଯ୍ୟ କରିବ।

ନେହେରୁ କହିଥିଲେ କୋଟି କୋଟି ଲୋକ ଆକାଶର ଗ୍ରହ ନକ୍ଷତ୍ରକୁ ଅନାଇଲେ ଆମ ଭାଗ୍ୟ ଫିଟିବ ନାହିଁ। ଠିକ ପରିଶ୍ରମ ଓ କାରିଗରୀ କୌଶଳଦ୍ୱାରା ଆମ ଭାଗ୍ୟକୁ ହାତମୁଠାରେ ରଖିବାକୁ ହେବ। ସେ ନାନା ଯୋଜନା ଦ୍ୱାରା ଭାରତକୁ ତୃତୀୟ ସ୍ଥାନରେ ରଖିଲେ। ଶତକଡ଼ା ୮୦ ଭାଗ ଲୋକ ତ ଗାଁରେ ରହନ୍ତି, ସେମାନେ ତ ପୁରାଣ ପୁଥିର— ବିଶ୍ୱାସର ଜାଲରେ ବନ୍ଧା। ସେମାନଙ୍କୁ ସେଥିରୁ ନମୁକୁଳାଇଲେ, ଅନ୍ଧକୂପରୁ ଉଦ୍ଧାର ନକଲେ ସେମାନେ ଏ ଦୁନିଆର ଆଲୋକ ଦେଖିବେ କିପରି ?

ଗାନ୍ଧୀଜୀ କହିଥିଲେ ଗାଁରେ ଭାରତର ଆତ୍ମା ଅଛି। ଗାଁ ଗାଁ ହୋଇ ରହୁ—ତାକୁ ସହର କରିବାକୁ ଚେଷ୍ଟା କରନା। ତାଙ୍କ ଗାଁର ଆବର୍ଜନା ହଟାଇବା ନାଁରେ ସେଠାରେ ସହରର ଜଞ୍ଜାଳ ନେଇ ଲଦାଅନା। ସହରର ଚକଚକିଆରେ ଭୁଲାଇ ତାଙ୍କ ମନକୁ ଉଚ୍ଛନ୍ନ କରନା। ତାଙ୍କ ପାଇଁ ଖାଇବା ପିଇବା, ଲୁଗାପଟା, ପାଠପଢ଼ା, ଔଷଧ ପତ୍ର ଓ ଘରଦ୍ୱାରର ବନ୍ଦୋବସ୍ତ କର। ଗାଁଟି ସବୁଠି ସୁନ୍ଦର ହେଉ ଓ ସେଠି ଭାରତୀୟ ଜୀବନର ମୌଳିକତା ଫୁଟିଉଠୁ।

ସତ୍ୟ, ଅହିଂସା ଓ ପ୍ରେମ ଭିତ୍ତିରେ ଗାନ୍ଧିଜୀ ଯେଉଁ ସର୍ବଧର୍ମର ସମନ୍ୱୟ କରିବାକୁ ବସିଥିଲେ ସେକଥା ଲୋକେ ତାଙ୍କ ପରେ ଭୁଲିଗଲେ। ଫଳରେ ବିଭିନ୍ନତା ମଧ୍ୟରେ

ଏକତା ଏବେ ବି ସ୍ୱପ୍ନ ହୋଇ ରହିଛି । ତେଣୁ ଭାରତର ଚିନ୍ତାଶୀଳ ଲୋକ ଧର୍ମର ପ୍ରଭାବ କମାଇବା କଥା ଚିନ୍ତା କଲେଣି । ଆମ ଜାତିର ଚରିତ୍ର ଗଠନ ପାଇଁ ଧର୍ମାନ୍ଧତା, ସାଂପ୍ର-ଦାୟିକତା ଓ ଅନ୍ଧବିଶ୍ୱାସ ବିରୋଧରେ ଚେତାବନୀ ଶୁଣାଇଲେ ଆମର ଏକତା ଓ ସଂହତି ସଫଳ ହେବ ।

ଏବେ ଓଡ଼ିଶାର ଏକ ସୁଖ୍ୟାତ ସମ୍ପାଦକ 'ବିଶ୍ୱରେ ଶାନ୍ତି ପ୍ରତିଷ୍ଠା ପାଇଁ ସର୍ବବିଧ ଉଦ୍ୟମ ହେଉ' ବୋଲି ଶିରୋନାମା ଦେଇ ଲେଖିଲେ ଯେ, "ଭାରତର ଧର୍ମଗୁରୁମାନେ ହେଉଛନ୍ତି ମହାନ୍ ପାପୀ ।" ତା'ପର ଦିନ ସଂଶୋଧନ କରି ଲେଖିଲେ—ଏହା ମୁଦ୍ରା ପ୍ରମାଦ, ପାପୀ ବଦଳରେ ତ୍ୟାଗୀ ବୋଲି ପଢ଼ିବେ । ଏବେ ଯୋଜନା ପତ୍ରିକା ୧୯୮୫ ଅଗଷ୍ଟ ସଂଖ୍ୟାରେ ଯାହା ସବୁ ଲେଖିଛି ସେଥିରୁ ମନେହେବ ଯେ ବୋଧହୁଏ ମଣିଷ ପର ଚକ୍ରାନ୍ତର ଶିଖିଲାଣି । ସତରେ ଯେବେ ମଣିଷଙ୍କୁ ବିଶ୍ୱାସ କବଳରୁ ମୁକ୍ତ ନକଲେ ଏ ଜାତିର ମୁକ୍ତି ନାହିଁ ।

—

# ସାମାଜିକ ସ୍ୱାସ୍ଥ୍ୟ

ଶରୀର ସହିତ 'ସ୍ୱାସ୍ଥ୍ୟ' ସମ୍ପୃକ୍ତ । ସ୍ୱାସ୍ଥ୍ୟର ଉନ୍ନତି ବା ଅବନତି ସହିତ ଶରୀରର ଉନ୍ନତି ବା ଅବନତି ପାଇଁ ଦାୟୀ । କିନ୍ତୁ ସାମାଜିକ ସ୍ୱାସ୍ଥ୍ୟର ତାତ୍ପର୍ଯ୍ୟ ସ୍ୱତନ୍ତ୍ର । ଏକ ପକ୍ଷରେ ସମାଜରେ ବସବାସ କରୁଥିବା ସବୁ ଲୋକଙ୍କର ସ୍ୱାସ୍ଥ୍ୟକଥା ବିଚାର କରାଯାଇପାରେ । ଅନ୍ୟପକ୍ଷରେ ଗ୍ରାମାଞ୍ଚଳରେ ଥିବା ଲୋକଙ୍କର ସାମାଜିକ ଚଳଣି, ସଙ୍ଗପବାଣୀ ଏବଂ ଏମାନଙ୍କର ଭଲମନ୍ଦ ପ୍ରତି ଦୃଷ୍ଟି ଦିଆଯାଇପାରେ । ତେଣୁ ଗ୍ରାମାଞ୍ଚଳରେ ସାମାଜିକ ସ୍ୱାସ୍ଥ୍ୟକୁ ଦୁଇଟି ଦିଗରୁ ଆଲୋଚନା କରାଯିବା ଦରକାର ।

କଥାରେ ଅଛି, ସ୍ୱାସ୍ଥ୍ୟ ହିଁ ସମ୍ପଦ । ଗ୍ରାମାଞ୍ଚଳରେ ବାସକରୁଥିବା ଲୋକଙ୍କର ଶାରୀରିକ ସୌଷ୍ଠବ ଓ ସ୍ୱାସ୍ଥ୍ୟ ସେମାନଙ୍କର ଖାଦ୍ୟ, ପାନୀୟ ଓ ଆର୍ଥିକ ସମ୍ବଳ ଉପରେ ନିର୍ଭର କରେ । ଅଳ୍ପସରର ଲୋକମାନେ ନିଜ ଜମିରୁ ଅମଦାନୀ ହେଉଥିବା ଧାନ, ମୁଗ ଚଣା, ହରଡ଼, ହରଡ଼-ଆଦି ଫସଲ ନିଜର ଖାଦ୍ୟପାଇଁ ବ୍ୟବହାର କରନ୍ତି । ସେଥିରୁ ଯାହା ବଳକା ହୁଏ ତାକୁ ବିକି ଅନ୍ୟାନ୍ୟ ଖର୍ଚ୍ଚ କରନ୍ତି । ଯେଉଁମାନଙ୍କର ଜମିବାଡ଼ି ନାହିଁ ସେମାନେ ମୂଲ ଲାଗି ଚଳନ୍ତି । ସେମାନଙ୍କ ପାଇଁ ଯଥେଷ୍ଟ ଖାଦ୍ୟ ମିଳେନାହିଁ । ସେମାନଙ୍କ ପକ୍ଷେ ସୁଷମଖାଦ୍ୟ ବିଷୟରେ ଚିନ୍ତାକରିବା ଦୂରର କଥା । ତେଣୁ ସେମାନଙ୍କଠାରେ ଖାଦ୍ୟାଭାବଜନିତ ରୋଗ, ଅକାଳ ବାର୍ଦ୍ଧକ୍ୟ ଆଦି ଦେଖାଦିଏ । ଅବଶ୍ୟ ଆଜିକାଲି କେତେକ ଜାଗାରେ ସରକାର ଖର୍ଚ୍ଚରେ ଗରିବ ଲୋକଙ୍କୁ ଖାଦ୍ୟ ଯୋଗାଇ ଦିଆଯାଉଛି । କିନ୍ତୁ ତାହା ସେମାନଙ୍କ ପାଖରେ ଶସ୍ତାରେ ପହଞ୍ଚିବା ପୂର୍ବରୁ ମଧ୍ୟବର୍ତ୍ତୀ ବ୍ୟବସାୟୀମାନେ ଅଧିକ ଉଠାଇ ନେଇଯାଉଛନ୍ତି ।

ଖାଦ୍ୟ ବ୍ୟତୀତ ଉତ୍ତମ ପାନୀୟ ସୁନ୍ଦର ସ୍ୱାସ୍ଥ୍ୟପାଇଁ ଅପରିହାର୍ଯ୍ୟ । ଗ୍ରାମାଞ୍ଚଳରେ କୂଅ, ପୋଖରୀ, ନଦୀ, ନାଳ, ଯୋର, ବନ୍ଧ ଇତ୍ୟାଦିର ପାଣି ପିଇବାପାଇଁ ବ୍ୟବହୃତ ହୋଇଥାଏ । ନଦୀ, ନାଳ, ଝରଣା ଓ କୂଅରପାଣି ସ୍ୱଚ୍ଛ ହେବ ବୋଲି ଅନେକ ସମୟରେ ଆଶା କରାଯାଏ । କାରଣ ସେ ଅଞ୍ଚଳରେ ଶିଳ୍ପାଞ୍ଚଳ ନଥାଏ, ତେଣୁ ପାଣି ଦୂଷିତ ହୁଏ ନାହିଁ । ମାତ୍ର ବର୍ଷସାରା ସେଠାରେ ପିଇବାକୁ ପାଣି ମିଳେନାହିଁ । କେବଳ ବର୍ଷାଦିନେ ତାହାକରୁ ପାଣିଥାଏ । ବର୍ଷା ଛାଡ଼ିଗଲେ ପିଇବାପାଣିର ସମସ୍ୟା ଦେଖାଦିଏ । ପାଣିର ଅଭାବ ପଡ଼ିଲେ ଫସଲ ବଞ୍ଚିବା କଥା ଲୋକମାନେ ପ୍ରଥମେ ବିଚାର କରନ୍ତି । ତେଣୁ ପୋଖରୀ, ଗଡ଼ିଆ, ବନ୍ଧ ଇତ୍ୟାଦି କାଟି ଜମିକୁ ପାଣି ନେଇଯାଆନ୍ତି । ଖରାଦିନ ଆସିଗଲେ ପିଇବା ପାଣିର ଯେଉଁ ଅଭାବ ଦେଖାଦିଏ ତାହା କହିଲେ ନସରେ । ଯେଉଁ ଠିକଏ ଠିକଏ

ପାଣିଥାଏ ସେଠାରେ ଗାଈ, ମଇଁଷି ଗାଧୁଅନ୍ତି, ଧୋବା ତୁଠ କରେ ଏବଂ ଗାଁର ସମସ୍ତ ଆବର୍ଜନା ସେଠାରେ ପଡ଼େ। ଏହାଦ୍ୱାରା ପାଣି ଅପରିଷ୍କାର ହେଉଥିଲେ ମଧ୍ୟ ଗ୍ରାମବାସୀ-ମାନେ ସେହିପାଣି ପିଇବାପାଇଁ ବ୍ୟବହାର କରିଥାଆନ୍ତି। ଆଜିକାଲି କେତେକ ଜାଗାରେ କୂଅ ଓ ନଳକୂଅ ଖୋଳାଗଲେଣି। କିନ୍ତୁ ତାହା ସମସ୍ତଙ୍କ କାର୍ଯ୍ୟରେ ଲାଗିପାରୁନାହିଁ। ଦ୍ୱିତୀୟତଃ କିଛୁଦିନ ବ୍ୟବହାର କଲାପରେ ତାହା ଖରାପ ହୋଇଯାଉଛି ଏବଂ ଠିକ୍ ସମୟରେ ମରାମତି ହୋଇପାରୁନାହିଁ। ତେଣୁ ଲୋକମାନେ ପୁଣି ସେଇ ପୋଖରୀ, ଗାଡ଼ିଆକୁ ପିଇବା ପାଣିପାଇଁ ଧାଆନ୍ତି।

ଗ୍ରାମାଞ୍ଚଳର ସାମାଜିକ ସ୍ୱାସ୍ଥ୍ୟ ସେଠିକାର ଲୋକଙ୍କର ଚଳଣି ଉପରେ ନିର୍ଭର କରେ। ଚଳଣି ଭିତରେ କେତେକ ମେଳ, ପରସ୍ପର ନିର୍ଭରଶୀଳତା, ବିବାହ, ବ୍ରତ, ଜନ୍ମଦିନ ପାଳନ ବା ଶ୍ରାଦ୍ଧ, ଶୁଦ୍ଧିକ୍ରିୟା ଆଦି କର୍ମ। ଅବଶ୍ୟ ତା' ଭିତରେ ସାମାଜିକ କୁସଂସ୍କାର ଓ ସାମାଜିକ ଅନ୍ଧବିଶ୍ୱାସ ଆଦି ଅଛି। ଆଜିକାଲି କେତେକ ସମାଜରେ ସଫେଦାନ ପ୍ରଥା ଅଛି। ହଇଜା, ବସନ୍ତ ଆଦି ରୋଗ ହେଲେ ତା'ର ଉପଶମପାଇଁ ଠାକୁର, ଠାକୁରାଣୀଙ୍କ ପାଖରେ ମନ ଦଅନ୍ତି ଓ ପୂଜା କରନ୍ତି। ଅବଶ୍ୟ ଠାକୁର ଠାକୁରାଣୀଙ୍କୁ ପୂଜା କରିବା ଏକ ଧର୍ମଗତ ବିଶ୍ୱାସ। କିନ୍ତୁ ଧର୍ମନାମରେ କେତେକ ସ୍ୱାସ୍ଥ୍ୟରକ୍ଷାର କାର୍ଯ୍ୟ ପ୍ରଣାଳୀକୁ ଅବହେଳା ବା କୂଅ, ପୋଖରୀ ବା ଅପରିଷ୍କାର ଜାଗାରେ ବ୍ଲିଚିଂ ପାଉଡ଼ର ପକାଇବା ଇତ୍ୟାଦି ଆଧୁନିକ ବୈଜ୍ଞାନିକ ପଦ୍ଧତିର ଅନ୍ତର୍ଭୁକ୍ତ। ଏହାଦ୍ୱାରାହିଁ ଗ୍ରାମାଞ୍ଚଳରେ ସ୍ୱାସ୍ଥ୍ୟରକ୍ଷା ହୋଇଥାଏ।

ଆଜିକାଲି ଆମ ସମାଜରେ ଅନ୍ୟ ଏକ କୁସଂସ୍କାର ହେଉଛି ଛୁଆଁ ଅଛୁଆଁ ମନୋଭାବ ଏବଂ ଜାତିଭେଦ ପ୍ରଥା। ମହାତ୍ମା ଗାନ୍ଧୀଙ୍କ ଅମଳରୁ ଏହାକୁ ଦୂର କରିବା ପାଇଁ ଚେଷ୍ଟା ହୋଇଆସୁଛି। କିନ୍ତୁ ଏଭଳି ଏକ କୁସଂସ୍କାର ସମାଜରୁ ଦୂର ହୋଇପାରୁନାହିଁ। ଲୋକଙ୍କର ମନୋବଳ ବଢ଼ାଇ ଏହାକୁ ଦୂର କଲେ ସାମାଜିକ ଉନ୍ନତି ସମ୍ଭବ ହୋଇପାରିବ।

ଗ୍ରାମାଞ୍ଚଳରେ ବେକାରୀ ସମସ୍ୟା ପ୍ରବଳରୁ ପ୍ରବଳତର ହେବାରେ ଲାଗିଛି। ଏବେ ଲୋକଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନୁହେଁ। ଦ୍ୱିତୀୟରେ କାମଧନ୍ଦା ନପାଇ ଲୋକେ ସ୍ଥାବର ଅସ୍ଥାବର ସମ୍ପତ୍ତି ବିକିଦେଉଛନ୍ତି। ଅନେକେ ଘରଛାଡ଼ି କାମପାଇଁ ସହର ଆଡ଼କୁ ପଳାଇ ଯାଉଛନ୍ତି। ଯେଉଁମାନେ ଗାଁରେ ରହିଯାଉଛନ୍ତି ସେମାନେ ଅନେକ ସମୟରେ ଈର୍ଷା, ଦ୍ୱେଷ, ମାମଲାମକଦ୍ଦମା, ଦଙ୍ଗାହଙ୍ଗାମା, ଚୋରି, ଡକାୟତି, ମଦ୍ୟପାନ ଆଦିରେ ସମୟ କଟାଉଛନ୍ତି। ଏହାଦ୍ୱାରା ଯୁବଶକ୍ତିର ଅପବିନିଯୋଗ, ସମୟର ଅପବ୍ୟବହାର, ଏବଂ ସର୍ବୋପରି ସାମାଜିକ ଅବକ୍ଷୟ ହେଉଛି। ଯଥା ସମୟରେ ଏହାର ପ୍ରତିକାର ନହେଲେ ସାମାଜିକ ସ୍ୱାସ୍ଥ୍ୟର ଯଥେଷ୍ଟ ହାନି ଘଟିବ।

ଗ୍ରାମାଞ୍ଚଳରେ ସାମାଜିକ ସ୍ୱାସ୍ଥ୍ୟ ତଥା ବିସ୍ତାର କଲାବେଳେ ଆଉ ଗୋଟିଏ କଥା ଆଖିରେ ପଡ଼େ, ତାହା ହେଲା ଶିକ୍ଷାର ଅଭାବ ଓ ଶିକ୍ଷାପ୍ରତି ଅବହେଳା । ଗାଁଗହଳରେ ଅନେକ ପୁଅଝିଅ ପାଠ ପଢ଼ିପାରୁନାହାନ୍ତି । ଏହାର ଅନେକ କାରଣ ଭିତରୁ ଗୋଟିଏ ହୋଇପାରେ ଯେ ସବୁ ଗାଁରେ ସ୍କୁଲ, ଚଟଶାଳୀ ବା ଚାହାଳୀ ନଥାଏ । ଦ୍ୱିତୀୟରେ ଲୋକଙ୍କର ଆର୍ଥିକ ଅବସ୍ଥା ସେତେ ସ୍ୱଚ୍ଛଳ ନୁହେଁ । ତେଣୁ ସେମାନେ ପିଲମାନଙ୍କୁ ପାଠ ପଢ଼ିବାକୁ ନ ଛାଡ଼ି କିଛି ରୋଜଗାର କରିବାପାଇଁ ପଠାଇଥାଆନ୍ତି । ତୃତୀୟରେ ଅଳ୍ପକାଳ ଦେଖାଦେଇଥିବା ବେକାରି ସମସ୍ୟା ପିଲାମାନଙ୍କ ମନରେ ପାଠ ପଢ଼ିବାପାଇଁ ବିଶେଷ ଆଗ୍ରହ ସୃଷ୍ଟି କରେ ନାହିଁ ।

ଲୋକମାନଙ୍କ ଭିତରେ ଶିକ୍ଷାର ପ୍ରସାର ଘଟିଲେ ସାମାଜିକ ସ୍ୱାସ୍ଥ୍ୟର ଉନ୍ନତି ହେବ । ଅବଶ୍ୟ କେବଳ ସାଧାରଣ ଶିକ୍ଷା କଥା କହିଲେ ହେବନାହିଁ । ତା' ସହିତ ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ଶିକ୍ଷା, କୃଷି ଶିକ୍ଷା, ନୈତିକତା ଶିକ୍ଷା ଆଦି ଦେବା ଦରକାର । ତେଣୁ ପ୍ରଶ୍ନ ଉଠିପାରେ ଯେ ଏ ସବୁ ଶିକ୍ଷା ଦିଆଯିବ କିପରି ?

ଅତୀତରେ ଚାହାଳୀ, ଚଟଶାଳୀ ଥିଲା । ପିଲାମାନେ ୫-୬ ବର୍ଷ ହୋଇଗଲେ ସେଠାକୁ ଯାଇ ଅକ୍ଷର ଶିକ୍ଷା, ଅଙ୍କ ଶିକ୍ଷା ଇତ୍ୟାଦି ଆରମ୍ଭ କରିଦେଉଥିଲେ । ପଢ଼ାଇବା ପାଇଁ ଅବଧାନ ଥିଲେ । ସେମାନେ ବଂଶାନୁକ୍ରମେ ପାଠ ପଢ଼ାଇ ଆସୁଥିଲେ । ତେଣୁ ସେମାନଙ୍କୁ "ମାଷ୍ଟିବଂଶ ଅବଧାନ" ବୋଲି କୁହାଯାଉଥିଲା । ମଝିରେ କିଛି ଦିନ ଚାହାଳୀ ବା ଚଟଶାଳୀ ଲୋପପାଇବାପରେ ତାହା ପୁନର୍ବାର କାର୍ଯ୍ୟକାରୀ ହେଲାଣି । ସହରି ସଭ୍ୟତାରେ ନର୍ସରୀ, କିଣ୍ଡରଗାର୍ଟେନ ଭଳି ଗ୍ରାମ୍ୟ ସଭ୍ୟତାରେ ଚାହାଳୀ ବା ଚଟଶାଳୀ, ବାଳବାଡ଼ି ଆଦିର ପ୍ରଚଳନ ହେଲାଣି । ଶିଶୁମାନେ ବିଦ୍ୟାଳୟକୁ ଯିବା ପୂର୍ବରୁ ପ୍ରାରମ୍ଭିକ ଶିକ୍ଷା ପାଇ ତା'ପରେ ବିଦ୍ୟାଳୟକୁ ଯାଆନ୍ତି । ଯେଉଁମାନେ ବିଦ୍ୟାଳୟକୁ ଯାଇ ଶିକ୍ଷା କରିବାର ସୁବିଧା ଓ ସୁଯୋଗ ପାଉନାହାନ୍ତି ସେମାନଙ୍କ ପାଇଁ ସାନ୍ଧ୍ୟକାଳୀନ ବିଦ୍ୟାଳୟର ସୁବିଧା ହେଉଛି । କାମଧନ୍ଦା ଯୋଗୁଁ ଦିନସାରା ବ୍ୟସ୍ତରହିଲେ ସନ୍ଧ୍ୟା ସମୟରେ ପ୍ରୌଢ଼ଶିକ୍ଷା କେନ୍ଦ୍ରରେ ଯାଇ ଶିକ୍ଷା କରିବାର ସୁବିଧା ଅଛି । ପ୍ରୌଢ଼ଶିକ୍ଷା କେନ୍ଦ୍ରରେ ଅକ୍ଷରଶିକ୍ଷା, ବହିପଢ଼ା ବ୍ୟତୀତ ଦେଶର ଆର୍ଥିକ, ସାମାଜିକ, ରାଜନୈତିକ ଓ ଅନ୍ୟାନ୍ୟ ସମସ୍ୟାମାନ ଆଲୋଚନା କରାଯାଇଥାଏ । ସାଂସ୍କୃତିକ କାର୍ଯ୍ୟକ୍ରମ, ସ୍ୱାସ୍ଥ୍ୟ ଆଲୋଚନା ମଧ୍ୟ ଏଠାରେ ହୋଇଥାଏ । ଏ ସବୁ ଦୃଷ୍ଟିରୁ ପ୍ରୌଢ଼ଶିକ୍ଷା ଗ୍ରାମାଞ୍ଚଳରେ ଶିକ୍ଷାର କେନ୍ଦ୍ରବିନ୍ଦୁ ହେବାର ଯଥେଷ୍ଟ ସମ୍ଭାବନା ଅଛି । ଗ୍ରାମାଞ୍ଚଳରେ ଶିକ୍ଷା ପ୍ରସାରର ଅନ୍ୟ କେତେକ ମାଧ୍ୟମ ହେଲା—ପାଲା, ଦାସକାଠିଆ, ଲୋକକଥା, ଲୋକଗୀତ ଓ ଚିତ୍ରମାଳୀ । ଏହା ବ୍ୟତୀତ ଯାତ୍ରା, ଥିଏଟର, ସିନେମା ଆଦିର ଉପାଦେୟତା ଯଥେଷ୍ଟ ଅଛି ।

ଗ୍ରାମାଞ୍ଚଳରେ ସାମାଜିକ ସ୍ୱାସ୍ଥ୍ୟ ତଥା ବିସ୍ତାର କଲାବେଳେ ଗ୍ରାମାଞ୍ଚଳର ପର୍ବପର୍ବାଣୀ ବିଷୟରେ ଆଲୋଚନା କରିବା ଦରକାର । ଆମ ଦେଶର ଅଧିକାଂଶ ଲୋକ କୃଷି ଉପରେ ନିର୍ଭର କରି ଚଳୁଥିବା ହେତୁ ଆମର ପର୍ବପର୍ବାଣୀ କୃଷିଭିତ୍ତିକ ହୋଇଥାଏ । ଦଶହରା,

ରଜ, ନୂଆଖିଆ, ଦୋଳ ଉତ୍ସବ, ବିଭିନ୍ନ ଅମାବାସ୍ୟା, ପୂର୍ଣ୍ଣିମା, ସଂକ୍ରାନ୍ତି ଆଦି ଉତ୍ସବ, ଓଷା, ଉପବାସ ଆଦି କୃଷି ଉପରେ ନିର୍ଭର କରି ହୋଇଥାଏ । ଅର୍ଥାତ୍ ଗ୍ରାମାଞ୍ଚଳର କୃଷକ ଜମିରେ ଫସଲ ବୁଣିଦେଇ ଅବସର ସମୟରେ କେତେକ ଉତ୍ସବ ପାଳନ କରେ ଏବଂ ଫସଲ ଅମଳ ହୋଇଗଲେ ହାତକୁ ଧନ ଆସିଲେ ସେ ଆଉ କେତେକ ପର୍ବ ପାଳନ କରେ । ଏଦ୍ୱାରା ଗ୍ରାମବାସୀଙ୍କର ଦୁଇଟି ଉଦ୍ଦେଶ୍ୟ ସାଧିତ ହୁଏ । ପ୍ରଥମରେ ବିଭିନ୍ନ ଉତ୍ସବ ପାଳନ ଓ ଅବସର ବିନୋଦନ ମାଧ୍ୟମରେ ତା'ର ମାନସିକ ଅବସାଦ ଦୂରହୁଏ । ସାଇପଡ଼ିଶା, ବନ୍ଧୁବାନ୍ଧବଙ୍କ ଗହଣରେ ଉତ୍ସବ ପାଳନ କରୁଥିବାହେତୁ ସାମାଜିକ ସମ୍ପର୍କ ଦୃଢ଼ୀଭୂତ ହେବା ସଙ୍ଗେ ସଙ୍ଗେ ସମସ୍ତେ ମିଳିମିଶି ଆନନ୍ଦ ଉପଭୋଗ କରନ୍ତି । ଦ୍ୱିତୀୟରେ ପର୍ବପର୍ବାଣୀମାନଙ୍କରେ ବିଭିନ୍ନ ପ୍ରକାର ଖାଦ୍ୟ, ଯଥା: ଖିରି, ଖେଚେଡ଼ି, ମହୁର, ଅମ୍ବିଳ, ଶାଗ, ଭଜାଭଜି, ପିଠାପଣା ଆଦି ତିଆରି ହୁଏ । ଏଦ୍ୱାରା ସୁସ୍ୱାଦୁ ଖାଦ୍ୟ ଖାଇବା ସଙ୍ଗେ ସଙ୍ଗେ ଖାଦ୍ୟ ପରିବର୍ତ୍ତନ ଜନିତ ଆନନ୍ଦ ସେମାନେ ପାଇଥାଆନ୍ତି ।

ବର୍ତ୍ତମାନ କିନ୍ତୁ ଗ୍ରାମାଞ୍ଚଳର ସାମାଜିକ ସ୍ଥିତି କଥା ଚିନ୍ତାକଲେ କେତେବେଳେ ଆମକୁ ଚନ୍ଦ୍ରମୁହାଣୀ କି ପଶ୍ଚିମମୁହାଣୀ ଛକରେ ଠିଆହେଲା ପରି ମନେହେଉଛି । କାରଣ ଗ୍ରାମାଞ୍ଚଳ ବର୍ତ୍ତମାନ ସହରଆ ହେବାକୁ ଯାଉଛି । ଦେଶରେ ଶିଳ୍ପ ପ୍ରସାରର କାର୍ଯ୍ୟକ୍ରମ ଦ୍ୱାରା ଗ୍ରାମାଞ୍ଚଳରେ ଶିଳ୍ପ ବଢ଼ିଚାଲିଛି ଏବଂ କୃଷି ପାଇଁ ଜମିର ଅଭାବ ହେଉଛି । ଲୋକଙ୍କର କୃଷି କରିବା ମନୋଭାବ ଧିମେଇ ଯାଉଛି । ପଞ୍ଜାବ, ହରିଆନା ପ୍ରଭୃତି ରାଜ୍ୟରେ କୃଷିକାର୍ଯ୍ୟ ଶିଳ୍ପ ମାଧ୍ୟମରେ ହେଉଛି । ଶିଳ୍ପୀକରଣ ଫଳରେ ଗ୍ରାମାଞ୍ଚଳରେ ବିଜୁଳି, କଳପାଣି, ରେଡ଼ିଓ, ଟେଲିଭିଜନ, ସିନେମା, ଏପରିକି ମଦଦୋକାନ ସ୍ଥାପିତ ହେଲାଣି । ଏଦ୍ୱାରା ଗ୍ରାମାଞ୍ଚଳର ଅବସ୍ଥା ରୂପାନ୍ତରିତ ହେବାରେ ଲାଗିଛି । ଗତକାଲିର ଅବସ୍ଥା ଆଜି ନାହିଁ, ବା ଆଜିର ଅବସ୍ଥା ଆସନ୍ତାକାଲିକୁ ରହିବ ନାହିଁ । ଏସବୁ କଥାକୁ ଆଖିଆଗରେ ରଖି ମନୋରଞ୍ଜନବିତ୍ ତଥା ସମାଜରଞ୍ଜନବିତ୍‌ମାନେ ଗ୍ରାମ୍ୟସଂସ୍କୃତି ଭିତରେ ବସବାସ କରୁଥିବା ଲୋକମାନଙ୍କର ଚଳଣି ପ୍ରତି ଧ୍ୟାନ ଦେବା ଦରକାର ।

# ଗ୍ରାମ୍ୟ ବିଦ୍ୟୁତ୍‌କରଣ

[ ଗ୍ରାମ୍ୟ ବିଦ୍ୟୁତ୍‌କରଣ ଅନେକାଂଶରେ ସହର ଓ ଗ୍ରାମ ମଧ୍ୟରେ ଥିବା ତାରତମ୍ୟ ଦୂର କରିବ । ଏଥିରେ ଯାହା ଅଗ୍ରଗତି ହୋଇଛି ବା ଯୋଜନା ବଢ଼ିଚାଲିଛି । ]

ମାତ୍ର ୩୦ ବର୍ଷ ପୂର୍ବେ ବିଜୁଳି ଏକ ବିଳାସସାମଗ୍ରୀ ରୂପେ ପରିଗଣିତ ହେଉଥିଲା । କେତେଗୋଟି ବଡ ବଡ଼ ସହରକୁ ଛାଡ଼ିଦେଲେ ଅନ୍ୟତ୍ର ବିଜୁଳିର ନାମ ଗନ୍ଧ ମଧ୍ୟ ନଥିଲା । ମଧ୍ୟବିତ୍ତ ଏବଂ ଗରିବ ଶ୍ରେଣୀର ଲୋକମାନେ ଏହାର ବ୍ୟବହାର କରିପାରୁଥିଲେ ।

ଓଡ଼ିଶାରେ ହୀରାକୁଦ ବନ୍ଧ ଯୋଜନାଦ୍ୱାରା ୧୯୫୭ ମସିହାରେ ପ୍ରଥମ ଥର ଉଚ୍ଚଚାପ ବିଶିଷ୍ଟ ବିଦ୍ୟୁତ୍ ଉତ୍ପାଦନ ସମ୍ଭବ ହେଲା । ରାଉରକେଲାର ଲୌହ କାରଖାନା, ରାଜଗାଙ୍ଗପୁର ସିମେଣ୍ଟ କାରଖାନା, ଯୋଡ଼ାରେ ଫେରୋକ୍ରମ ପ୍ରଭୃତି ବୃହତ୍‌ଶିଳ୍ପ ଅନୁଷ୍ଠାନକୁ ଏଠାରୁ ବିଦ୍ୟୁତ୍ ଯୋଗାଇଦିଆଗଲା । ଉପକୂଳବର୍ତ୍ତୀ ଅଞ୍ଚଳକୁ ଚୌଦ୍ୱାରଠାରେ ଏକ ସବ୍‌ଷ୍ଟେସନ ବସାଯାଇ ହୀରାକୁଦରୁ ବିଜୁଳି ଯୋଗାଇ ଦିଆଗଲା । ଏହାଦ୍ୱାରା ଓଡ଼ିଶାର ପ୍ରାୟ ସମସ୍ତ ଅଞ୍ଚଳରେ ଅନେକ କ୍ଷୁଦ୍ର ଓ ମଧ୍ୟମ ଶିଳ୍ପ ଜନ୍ମଲାଭ କରିପାରିଲା । କେତେକ ଗ୍ରାମାଞ୍ଚଳକୁ ମଧ୍ୟ ବିଜୁଳି ଯୋଗାଇ ଦିଆଗଲା ।

ବିଦ୍ୟୁତ୍ ଉତ୍ପାଦନ, ବଣ୍ଟନ ଓ ବିକାଶ ସଂପୃକ୍ତ ନିମିତ୍ତ ଓଡ଼ିଶାରେ ୧୯୬୧ ମସିହାରେ ରାଜ୍ୟ ବିଦ୍ୟୁତ୍‌ବୋର୍ଡ ସ୍ଥାପନ କରାଗଲା । ଏହାଦ୍ୱାରା ବିଜୁଳି ପରିବେଷଣ ନିମିତ୍ତ ଏକ ନୂତନ ଯୁଗର ସୂତ୍ରପାତ ହେଲା । ୧୯୬୦-୬୧ ମସିହା ବେଳକୁ ଓଡ଼ିଶାରେ ମାତ୍ର ୧୧୮ଟି ଗ୍ରାମରେ ବିଦ୍ୟୁତ୍ ସଂଯୋଗ କରାଯାଇଥିଲା । ପାଞ୍ଚବର୍ଷ ମଧ୍ୟରେ ଅର୍ଥାତ୍ ୧୯୬୫-୬୬ ମସିହା ବେଳକୁ ବିଦ୍ୟୁତ୍‌ବୋର୍ଡ ନୂତନ ୪୧୬ଟି ଗ୍ରାମକୁ ବିଦ୍ୟୁତ୍ ଯୋଗାଇପାରିଥିଲା ।

୧୯୬୪ ମସିହାରେ ହୀରାକୁଦର ଉତ୍ପାଦନ କ୍ଷମତା ୨୭୦ ମେଗାୱାଟ୍‌ରେ ପହଞ୍ଚିପାରିଥିଲା । ତାଳଚେରର ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ର ୧୯୬୮ ମସିହାରୁ ଉତ୍ପାଦନ ଆରମ୍ଭ କରିଅଛି । ଗ୍ରାମ୍ୟ ବିଦ୍ୟୁତ୍ ଯୋଗାଣ ଯୋଜନା ମାଧ୍ୟମରେ ପ୍ରତିବର୍ଷ ବିଭିନ୍ନ ଗ୍ରାମାଞ୍ଚଳକୁ ବିଜୁଳି ଯୋଗାଇ ଦିଆଯାଉଅଛି । ୧୯୬୬-୬୭ରେ ୯୭ଟି, ୧୯୬୭-୬୮ରେ ୧୨୮ଟି, ୧୯୬୮-୬୯ ମସିହାରେ ୬୨ଟି ଗ୍ରାମକୁ ଏବଂ ଏହିପରି ପର୍ଯ୍ୟାୟକ୍ରମରେ ବିଭିନ୍ନ ଗ୍ରାମାଞ୍ଚଳରେ ବିଦ୍ୟୁତ୍ ଯୋଗାଣ କାର୍ଯ୍ୟକ୍ରମ ଚାଲୁରହିଅଛି ।

୧୯୬୯-୭୦ ମସିହାରେ ଚତୁର୍ଥ ପଞ୍ଚବାର୍ଷିକ ଯୋଜନା ଆରମ୍ଭ ହେଲା ଏବଂ ଏହି ଯୋଜନାରେ ଗ୍ରାମାଞ୍ଚଳ ବିଦ୍ୟୁତ ଯୋଗାଣକୁ ମୁଖ୍ୟ ସ୍ଥାନ ଦିଆଯାଇଅଛି । ୧୯୬୯ ମସିହାରେ ଗ୍ରାମ୍ୟ ବିଦ୍ୟୁତ୍ ଋଣ ସଂସ୍ଥା ସ୍ଥାପନ କରାଗଲା । ଉକ୍ତ ଯୋଜନାର ଲକ୍ଷ୍ୟ

ଦେଇ ଗ୍ରାମାଞ୍ଚଳକୁ ବିଦ୍ୟୁତ୍ ଯୋଗାଣ ତ୍ୱରାନ୍ୱିତ କରିବା ଏବଂ ଉକ୍ତ ଲକ୍ଷ୍ୟ ସାଧନ ନିମିତ୍ତ ଉପଯୁକ୍ତ ଅର୍ଥ ଯୋଗାଣ, ରାଜ୍ୟ ବିଦ୍ୟୁତ୍ ବୋର୍ଡର ସୁବିଧା ମୁତାବକ ଅନୁସନ୍ଧାନ ରିପୋର୍ଟ ତିଆରି କରି କାର୍ଯ୍ୟକାରୀ କରିବା ନିମିତ୍ତ ଉପଯୁକ୍ତ ପଦକ୍ଷେପ । ଉକ୍ତ ରିପୋର୍ଟରେ ଆର୍ଥିକ, ବୈଷୟିକ ଏବଂ ଆନୁଷଙ୍ଗିକ ଅନେକ ବିବରଣୀ ପୁଙ୍ଖାନୁପୁଙ୍ଖ ଯୋଗାଇ ଦିଆଯାଇଥାଏ । ଡିରେକ୍ଟରମାନେ ଉକ୍ତ ରିପୋର୍ଟ ପାଇଲା ପରେ ଗ୍ରାମାଞ୍ଚଳ ବିଦ୍ୟୁତ୍ ସଂସ୍ଥା (REC)ର କର୍ମଚାରୀମାନେ ଉକ୍ତ ଅଞ୍ଚଳକୁ ପରିଦର୍ଶନରେ ଆସନ୍ତି ଏବଂ ଆଲୋଚନା ପରେ ସଂଶୋଧିତ ଯୋଜନାକୁ ସ୍ୱୀକୃତ ଦିଅନ୍ତି । ଉକ୍ତ ଯୋଜନା ମଞ୍ଜୁର ପାଇଲାପରେ ପର୍ଯ୍ୟାୟକ୍ରମେ ଋଣ-ଟଙ୍କା ବିଦ୍ୟୁତ୍‌ବୋର୍ଡକୁ ଯୋଗାଇ ଦିଆଯାଇଥାଏ ଏବଂ ଯୋଜନା କାର୍ଯ୍ୟକାରୀ ହୁଏ । ଅବଶ୍ୟ ପ୍ରାପ୍ୟ ଋଣ ତୁଳନାରେ ଯୋଜନାର କାର୍ଯ୍ୟ ଓ ଶୁଳ୍କ ଆଦାୟରେ ଅନୁରୂପ ଅଗ୍ରଗତି ହୋଇନପାରିଲେ REC ଅବଶିଷ୍ଟ ଋଣ ପ୍ରଦାନ ବନ୍ଦ କରିଦିଅନ୍ତି ।

ଅଳ୍ପ ସୁଧ ହାରରେ RECରୁ ଋଣ ଆଣି ଓଡ଼ିଶା ରାଜ୍ୟ ବିଦ୍ୟୁତ୍ ବୋର୍ଡ ୧୯୭୦-୭୧ ମସିହାଠାରୁ ସୁବିଧାରେ ଗ୍ରାମ୍ୟ ବିଦ୍ୟୁତ୍‌କରଣ ଓ ଉଠାଜଳସେଚନକୁ ବିଦ୍ୟୁତ୍ ଯୋଗାଇ ଆସୁଅଛନ୍ତି । ପ୍ରତ୍ୟେକ ବ୍ଲକକୁ ଏକକରୂପେ ନିଆଯାଇ ଅନୁସନ୍ଧାନ ରିପୋର୍ଟ ତିଆରି କରାଯାଉଅଛି । ଏବଂ କର୍ପୋରେସନ୍ ନିକଟକୁ ମଞ୍ଜୁରି ନିମିତ୍ତ ପଠାଯାଉଅଛି । ବର୍ଷାନୁକ୍ରମେ ଏହି କାର୍ଯ୍ୟରେ ଅଗ୍ରଗତି ନିମ୍ନରେ ପ୍ରଦାନ କରାଗଲା ।

| ବର୍ଷ | ବିଦ୍ୟୁତ୍ ସଞ୍ଚାରିତ ଗ୍ରାମ ସଂଖ୍ୟା | ଉଠା ଜଳସେଚନ ସଂଖ୍ୟା |
|---|---|---|
| ୧୯୭୦-୭୧ | ୯୦୭ | ୬୮ |
| ୧୯୭୧-୭୨ | ୨୨୮୮ | ୨୮୭ |
| ୧୯୭୨-୭୩ | ୨୮୭୮ | ୧୦୦୭ |
| ୧୯୭୩-୭୪ | ୨୨୭୪ | ୫୨୪ |
| ୧୯୭୪-୭୫ | ୨୨୩୧ | ୭୩୧ |
| ୧୯୭୫-୭୬ | ୧୫୪୯ | ୮୫୧ |
| ୧୯୭୬-୭୭ | ୧୬୮୪ | ୮୫୮ |
| ୧୯୭୭-୭୮ | ୧୨୦[illegible] | ୯୯୧ |
| ୧୯୭୮-୭୯ | ୫୨୦ | ୨୮୦୧ |
| ୧୯୭୯-୮୦ | ୧୭୫୨ | ୩୭୪୫ |
| ୧୯୮୦-୮୧ | ୧୭୨୧ | ୩୧୫୫ |
| ୧୯୮୧-୮୨ | ୧୨୯୩ | ୨୮୨୮ |
| ୧୯୮୨-୮୩ | ୧୨୮୭ | ୩୭୭୭ |
| ୧୯୮୩-୮୪ | ୧୨୭୭ | ୩୪୯୧ |

ଏହିପରି ପର୍ଯ୍ୟାୟକ୍ରମେ କାର୍ଯ୍ୟକ୍ରମ ଗ୍ରାମାଞ୍ଚଳରେ ଆଗେଇ ଚାଲିଅଛି । ୧୯୮୩-୮୪ ଶେଷସୁଦ୍ଧା ଓଡ଼ିଶାରେ ସର୍ବମୋଟ ୨୨,୫୨୦ ଗ୍ରାମ ଓ ୨୨୮୮ଟି ଉପଗ୍ରାମକୁ ବିଦ୍ୟୁତ୍‌କରଣ

କରାଯାଇଥିଲା । ଏହା ଓଡ଼ିଶାର ସର୍ବମୋଟ ଗ୍ରାମସଂଖ୍ୟାର ଶତକଡ଼ା ୪୭.୯୨ ଭାଗ । ସାରା ଭାରତବର୍ଷରେ ୧୯୮୩-୮୪ ମସିହା ସୁଦ୍ଧା ଗ୍ରାମ୍ୟ ବିଦ୍ୟୁତ୍କରଣର ଶତକଡ଼ା ଅନୁପାତ ୭୦ । ପ୍ରତିଦିନ ୫୯ ନୂତନ ଗ୍ରାମକୁ [illegible] ଭାବରେ ବିଦ୍ୟୁତ୍ ଯୋଗାଇ ଦିଆଯାଉ-ଅଛି ଏବଂ ସେହିପରି ୭୪୮ଟି ସେଚ ପମ୍ପସେଟକୁ ବିଦ୍ୟୁତ ଯୋଗାଣ କରାଯାଉଛି । ୧୯୮୩-୮୪ ମସିହା ସୁଦ୍ଧା ଭାରତରେ ୩,୪୭,୦୦୦ ଗ୍ରାମକୁ ଏବଂ ପ୍ରାୟ ୫୮ ଲକ୍ଷ ଗୋଟି ଜଳସେଚନ ପମ୍ପକୁ ବିଦ୍ୟୁତ୍ ଯୋଗାଇ ଦିଆଯାଇଥିଲା ।

ଓଡ଼ିଶାରେ ଆଦିବାସୀ ଏବଂ ନିମ୍ନ ଅନୁନ୍ନତ ଲୋକମାନଙ୍କର ସଂଖ୍ୟା ମୋଟ ଜନସଂଖ୍ୟାର ଶତକଡ଼ା ୩୮ ଭାଗ । ଏହା ସାରା ଭାରତବର୍ଷରେ ସବୁଠାରୁ ଉଚ୍ଚ ଅନୁପାତରେ ଅଛି । ଏହି ନିମ୍ନ ଅନୁନ୍ନତ ଲୋକମାନଙ୍କ ନିକଟରେ ବିଦ୍ୟୁତ ପହଞ୍ଚାଇବା ନିମିତ୍ତ ସରକାର ଯୋଜନା କରିଅଛନ୍ତି । ଅନୁନ୍ନତ ଅଞ୍ଚଳର ବିଦ୍ୟୁତ୍କରଣ ନିମିତ୍ତ REC ଯେଉଁ ମାନଦଣ୍ଡ ପ୍ରୟୋଗ କରେ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ନିମିତ୍ତ ତାହା ସମ୍ପୂର୍ଣ୍ଣ ଅଲଗା । ସହାୟ ଦରରେ ଏହି ଅଞ୍ଚଳକୁ ବିଦ୍ୟୁତ୍ ଯୋଗାଇ ଦିଆଯାଇଥାଏ । ସୁତରାଂ ଆଦିବାସୀ ଅଞ୍ଚଳକୁ ବିଦ୍ୟୁତ୍ ଯୋଗାଣ ଯୋଜନା ଅଙ୍ଗୀକାର କରିବା ସହଜସାଧ୍ୟ ହୋଇ ପାରୁନାହିଁ । ସାରା ଓଡ଼ିଶାର ୩୧୫ ବ୍ଲକ ମଧ୍ୟରୁ ୧୧୮ଟି ବ୍ଲକ ଏହି ଯୋଜନାର ଅନ୍ତର୍ଭୁକ୍ତ ।

ଯେଉଁ ଗ୍ରାମମାନଙ୍କରେ ଅନୁସୂଚିତ ଜାତି ଓ ଉପଜାତି ୨୦୦ରୁ ଅଧିକ ସେହି ଗ୍ରାମମାନଙ୍କୁ ମଧ୍ୟ ବିଦ୍ୟୁତ୍ ପହଞ୍ଚାଇ ଦେବା ନିମିତ୍ତ REC ଋଣ ମଞ୍ଜୁର କରୁଅଛି । ଏହି ବସ୍ତି-ଅଞ୍ଚଳରେ ବିଦ୍ୟୁତ ଯୋଗାଣ ପୂର୍ଣ୍ଣମାତ୍ରାରେ କାର୍ଯ୍ୟକାରୀ ହେଉଅଛି । ବର୍ଷଅନୁକ୍ରମରେ ଏହି କାର୍ଯ୍ୟର ସଫଳତା ନିମ୍ନରେ ପ୍ରଦାନ କରାଗଲା ।

| ବର୍ଷ | ଅନୁସୂଚିତ ଉପଜାତି ଗ୍ରାମ ସଂଖ୍ୟା | ଅନୁସୂଚିତ ଜାତି ଗ୍ରାମ୍ୟ ସଂଖ୍ୟା | ହରିଜନ ବସ୍ତି ଗ୍ରାମ ସଂଖ୍ୟା |
|---|---|---|---|
| ୧୯୭୯-୮୦ | ୩୯୭୫ | ୨୯୭ | ୧୨୪ |
| ୧୯୮୦-୮୧ | ୭୨୦ | ୧୪୯ | ୩୮ |
| ୧୯୮୧-୮୨ | ୪୫୮ | ୧୦୪ | ୪୨୭ |
| ୧୯୮୨-୮୩ | ୪୫୩ | ୯୩ | ୫୦୪ |
| ୧୯୮୩-୮୪ | ୪୧୧ | ୫୭ | ୫୭୧ |

ଏହି କ୍ରମରେ କାର୍ଯ୍ୟକ୍ରମ ବହୁତ ଶୀଘ୍ର କାର୍ଯ୍ୟକାରୀ ହୋଇଅଛି ଏବଂ ବର୍ତ୍ତମାନ ସୁଦ୍ଧା ଚାଲୁରହିଅଛି ।

ଗତ ୧୯୮୪ ମସିହା ମଇମାସ ୨୦ ଓ ୨୧ ତାରିଖ ଦିନ ଭୁବନେଶ୍ୱରଠାରେ "ଗ୍ରାମାଞ୍ଚଳ ସେବାରେ ବିଦ୍ୟୁତ୍" ବିଷୟରେ ଆଲୋଚନା କରାଯାଇଥିଲା । କେନ୍ଦ୍ର ଶକ୍ତିମନ୍ତ୍ରୀ, ଓଡ଼ିଶାର ମୁଖ୍ୟମନ୍ତ୍ରୀ, ଜଳସେଚନ ଓ ବିଦ୍ୟୁତ ବିଭାଗ ମନ୍ତ୍ରୀ ଏବଂ RECର ଉଚ୍ଚ କର୍ମଚାରୀ

ଉକ୍ତ ଆଲୋଚନାରେ ସ୍ଥାନ ଦେଇଥିଲେ । ଗ୍ରାମ୍ୟ ବିଦ୍ୟୁତ୍‌କରଣ ଯୋଜନାରୁ ଅଧିକ ଲାଭବାନ କରିବା, ଯଥା ଜଳସେଚନ ନିମିତ୍ତ ଅଧିକ ଧ୍ୟାନଦେବା ଏବଂ କୃଷୀମାନଙ୍କୁ ଉତ୍ସାହ ପ୍ରଦାନ କରିବା ତଥା ଗ୍ରାମ୍ୟଶିଳ୍ପକୁ ବିଦ୍ୟୁତ୍ ଯୋଗାଇଦେବା ଉପରେ ବିଶେଷ ଆଲୋଚନା କରାଯାଇଥିଲା । ୧୯୮୪-୮୫ ମସିହା ସୁଦ୍ଧା ଦେଶର ସମସ୍ତ ଗ୍ରାମକୁ ବିଦ୍ୟୁତ୍‌କରଣ କରିବା ଏବଂ ଯଥା ଜଳସେଚନ ମାଧ୍ୟମରେ ଭୂତଳସ୍ଥ ଜଳର ପୂର୍ଣ୍ଣ ବିନିଯୋଗ କରିବା ନିମିତ୍ତ ଲକ୍ଷ୍ୟ ରଖାଯାଇଥିଲା । ଗ୍ରାମ୍ୟ ବିଦ୍ୟୁତ୍‌କରଣ ନିମିତ୍ତ କେତେକ ଅସୁବିଧା ଅଛି । ସେହିସବୁ ପ୍ରତିବନ୍ଧକ ଦୂର କରାନଗଲେ କାର୍ଯ୍ୟ ସହଜରେ ସମ୍ପନ୍ନ ହୋଇପାରିବ ନାହିଁ । ଉକ୍ତ ଅସୁବିଧା ମଧ୍ୟରୁ କେତେକ ନିମ୍ନରେ ଉଲ୍ଲେଖ କରାଗଲା ।

୧ । ପ୍ରତି ଗ୍ରାମକୁ ବିଦ୍ୟୁତ ପହଞ୍ଚାଇବାକୁ ବୋର୍ଡ଼ ଯେତିକି ଅର୍ଥ ବ୍ୟୟ କରୁଅଛି ଏବଂ ଖର୍ଚ୍ଚ କରୁଅଛି ତା ତୁଳନାରେ ଶୁଳ୍କ ଆଦାୟ ବହୁତ କମ୍ ହେଉଅଛି । ଅଧିକାଂଶ ବ୍ୟକ୍ତିମାନଙ୍କର ଆର୍ଥିକ ସ୍ୱଚ୍ଛଳତା ନ ଥିବାରୁ ଆଶାନୁରୂପ ଗ୍ରାହକ ହେଉନାହାନ୍ତି । ଆଦିବାସୀ ଅଧ୍ୟୁଷିତ ଏବଂ ଅନୁନ୍ନତ ଅଞ୍ଚଳରେ ଏ ଅବସ୍ଥା ଅଧିକ ଜଟିଳ ଏବଂ ଉତ୍କଟ । ଗୋଟିଏ ଗ୍ରାମରୁ ସ୍ଥାନବିଶେଷରେ ୩-୪ ଜଣ ଗ୍ରାହକ ପାଇବା ଅସମ୍ଭବ ହୋଇପଡ଼େ ।

୨ । ବହୁଳ ଭାବରେ ବିଦ୍ୟୁତ୍ ଲାଇନ୍‌ର ପ୍ରସାର ହେବା ଫଳରେ ଏହାର ରକ୍ଷଣାବେକ୍ଷଣ ଉପଯୁକ୍ତ ଭାବରେ ହୋଇପାରୁନାହିଁ । ବିଦ୍ୟୁତ୍‌ବୋର୍ଡ଼ର ଅର୍ଥାଭାବ ପ୍ରତିବନ୍ଧକ ସୃଷ୍ଟି କରୁଅଛି ଏବଂ ଉପଯୁକ୍ତ ରକ୍ଷଣାବେକ୍ଷଣ ଅଭାବରୁ ବିଦ୍ୟୁତ୍ ବିଭ୍ରାଟ ସ୍ୱାଭାବିକ ଏବଂ ଏହି ଅସୁବିଧା ହେଉଅଛି ।

୩ । ଗ୍ରାମାଞ୍ଚଳକୁ ବିଦ୍ୟୁତ ସରବରାହ ନିମିତ୍ତ ଉପଯୁକ୍ତ ସଂଖ୍ୟକ ଉଚ୍ଚକ୍ଷମ ବିଶିଷ୍ଟ ଲାଇନ୍ ଓ ସବ୍‌ଷ୍ଟେସନର ଆବଶ୍ୟକତା ରହିଛି । ଏହା ମଧ୍ୟ ବ୍ୟୟସାପେକ୍ଷ; କିନ୍ତୁ ତାହା ନହେବା ଦ୍ୱାରା ତାରହାଲରେ ବିଦ୍ୟୁତ ଯଥେଷ୍ଟ ହ୍ରାସ ପାଉଅଛି । ବିଦ୍ୟୁତ୍ ଚାହିଦା ବଢ଼ିବା ସଙ୍ଗେ ସଙ୍ଗେ ଚାପ ହ୍ରାସ ଆହୁରି କ୍ଷିପ୍ରତର ହେଉଅଛି ।

୪ । ବିଦ୍ୟୁତ୍‌ବୋର୍ଡ଼ ଆର୍ଥିକ ସଙ୍କଟ ଦେଇ ଗତି କରୁଥିବାରୁ ବର୍ଷକୁ ବର୍ଷ ବିଦ୍ୟୁତ ଶୁଳ୍କହାର ବଢ଼ିବାରେ ଲାଗିଅଛି । ଗ୍ରାମାଞ୍ଚଳ ଲୋକମାନଙ୍କ ପକ୍ଷରେ ଏହା ଦୁର୍ବହ ହୋଇପଡ଼ୁଅଛି । ଫଳରେ ଗ୍ରାହକ ସଂଖ୍ୟା କ୍ରମଶଃ କମିଯାଉଅଛି । ଏହା ବ୍ୟତୀତ ବିଦ୍ୟୁତ୍‌ତାର ଓ ଅନ୍ୟାନ୍ୟ ସରଞ୍ଜାମ ପ୍ରଭୃତିର ଅତ୍ୟଧିକ ମୂଲ୍ୟ ବୃଦ୍ଧି ମଧ୍ୟ ସେମାନଙ୍କୁ ହତୋତ୍ସାହ କରୁଅଛି ।

୫ । ବିଦ୍ୟୁତ୍ ତାର ଓ ଉପକରଣ ଚୋରିଯିବା ଏକ ଦୈନନ୍ଦିନ ବ୍ୟାପାର ହୋଇଗଲାଣି । ଗ୍ରାମ୍ୟ ବିଦ୍ୟୁତ୍‌କରଣରେ ଏହା ଏକ ପ୍ରଧାନ ଅନ୍ତରାୟ । ରାଜ୍ୟ ପ୍ରଶାସନର ଦୃଢ଼ତା ଓ ଜନ ସହଯୋଗ ନହେଲେ ଏ ବ୍ୟାଧି ନିରାକରଣ କରିବା କଷ୍ଟକର ।

୬। ଗ୍ରାମାଞ୍ଚଳରେ ବିଦ୍ୟୁତ୍ ଚୋରି ଅନ୍ୟ ଏକ ଅସୁବିଧା ସୃଷ୍ଟି କରୁଛି। ଲୋକମାନଙ୍କର ଆର୍ଥିକ ସ୍ୱଚ୍ଛଳତାର ଅଭାବ ଏବଂ ଦୁଷ୍ଟବୁଦ୍ଧିର ଏହା ମଧ୍ୟ ଏକ ନମୁନା। ଜାଳେଣିର ଅଭାବରୁ ବିଦ୍ୟୁତ୍ ଚୁଲି ବ୍ୟବହାର କରିବା ନିମିତ୍ତ ଚୋରି କରିବା ଅପରିହାର୍ଯ୍ୟ ହୋଇ ପଡ଼ୁଅଛି।

ଉପରୋକ୍ତ ଅଭାବ ଅସୁବିଧା ସତ୍ତ୍ୱେ ଗ୍ରାମ ବିଦ୍ୟୁତ୍‌କରଣ ସରକାରଙ୍କର ଏକ ମୁଖ୍ୟ ଯୋଜନା, କାରଣ ବିଦ୍ୟୁତ୍‌ଶକ୍ତି ବ୍ୟବହାର ନକଲେ ଜନସାଧାରଣଙ୍କର ଜୀବନ ମାନଦଣ୍ଡ ଉନ୍ନତ ହୋଇପାରିବ ନାହିଁ। ଅଧୁନିକ ଯୁଗରେ ବିଦ୍ୟୁତ୍ ଶକ୍ତିର ବ୍ୟବହୃତ ପରିମାଣ ହିଁ ଆର୍ଥିକ ଉନ୍ନତର ମାନଦଣ୍ଡ। ଗ୍ରାମ ବିଦ୍ୟୁତ୍‌କରଣ ଦ୍ରୁତ ଗତିରେ ଅଗ୍ରସର ହେଉଅଛି ଏବଂ ତତ୍ ସଙ୍ଗେ ସଙ୍ଗେ ବୈଷୟିକ, ଆର୍ଥିକ ଓ ପ୍ରଶାସନିକ ସମସ୍ୟାମାନ ଯଥାସମ୍ଭବ ସମାଧାନ କରାଯାଉଛି। ବିଦ୍ୟୁତ୍ ଶକ୍ତିକୁ କଳକାରଖାନା ଏବଂ କୃଷି କ୍ଷେତ୍ରରେ ବିନିଯୋଗ କରି ଦେଶକୁ ଖାଦ୍ୟଶସ୍ୟ ଓ ଶିଳ୍ପରେ ଆତ୍ମନିର୍ଭରଶୀଳ କରିବାକୁ ପଡ଼ିବ। ଏହା ହେଉଛି ଗ୍ରାମ୍ୟ ବିଦ୍ୟୁତ୍‌କରଣର ମୂଳ ଲକ୍ଷ୍ୟ ଏବଂ ଉକ୍ତ କାର୍ଯ୍ୟ ସମାଧାନ ହୋଇପାରିଲେ ଗ୍ରାମାଞ୍ଚଳରେ ବାସକରୁଥିବା ଲୋକମାନଙ୍କର ଜୀବନ ଯାପନ ପ୍ରଣାଳୀ ପୁରାପୁରି ବଦଳିଯିବ, ସମସ୍ତେ ଆର୍ଥିକ ଉନ୍ନତ ହେବେ ଏବଂ ସହର ଓ ମଫସଲ ମଧ୍ୟରେ ଥିବା ତାରତମ୍ୟ ଅତିଶୀଘ୍ର ଦୂର ହୋଇଯିବ।

# ବିକଳ୍ପ ଶକ୍ତି

[ କେବଳ ବିଦ୍ୟୁତ୍ ବୋର୍ଡ ଉପରେ ନିର୍ଭର ନକରି ବିକଳ୍ପ ଶକ୍ତି କଥା ଚିନ୍ତା କରିବା ବାଞ୍ଛିତ ହେବ । ]

ଭାରତ ଏକ ଗ୍ରାମବହୁଳ ଦେଶ । ଲୋକସଂଖ୍ୟାର ପ୍ରାୟ ଶତକଡ଼ା ୭୦ ଭାଗ ଏହି ଗ୍ରାମମାନଙ୍କରେ ବସବାସ କରନ୍ତି । ଗ୍ରାମାଞ୍ଚଳର ଉନ୍ନତିଦ୍ୱାରା ହିଁ ଭାରତର ଉନ୍ନତି ସମ୍ଭବ । ଏଣୁ ମହାତ୍ମା ଗାନ୍ଧି ଗ୍ରାମବାସୀମାନଙ୍କର କଲ୍ୟାଣ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଥିଲେ । ଶକ୍ତିର ଉପଯୋଗ ଆଧୁନିକ ସଭ୍ୟତାର ମାପକାଠି । ଯେଉଁ ଦେଶ ଯେତେ ଶକ୍ତି ଉପଯୋଗ କରିପାରୁଛି ସେ ଦେଶ ସେତେ ସମୃଦ୍ଧ । ଏଣୁ ଭାରତବର୍ଷର ସମସ୍ତ ସମୃଦ୍ଧି କେବଳ ଗ୍ରାମାଞ୍ଚଳରେ ଶକ୍ତିର ଉପଯୋଗଦ୍ୱାରା ହିଁ ସମ୍ଭବ ।

ଗ୍ରାମବାସୀମାନଙ୍କର ପ୍ରଧାନ ଧନ୍ଦା ହେଲା କୃଷି, ତା' ପଛକୁ ଗୋ-ମହିଷାଦି ପଶୁ ତଥା ପକ୍ଷୀ ପାଳନ । କୁଟୀର ଏବଂ କ୍ଷୁଦ୍ରଶିଳ୍ପର ବିଶେଷ କରି କୃଷିସଂପୃକ୍ତ ଶିଳ୍ପର ପ୍ରସାର କ୍ରମେ ବଢ଼ୁଛି ଓ ଅଧିକ ସଂଖ୍ୟାର ଲୋକ ସେ ଧନ୍ଦାରେ ମନ ବଳାଉଛନ୍ତି । ବିଭିନ୍ନ ସେବାସଂସ୍ଥା ( ଯଥା ଶିକ୍ଷା, ଚିକିତ୍ସା ଇତ୍ୟାଦି ) ମାନଙ୍କରେ ମଧ୍ୟ କିଛି ଲୋକ ବ୍ୟସ୍ତ ରହୁଥାଆନ୍ତି । ଏ ସମସ୍ତ ଶ୍ରେଣୀର ଲୋକେ ନିଜ ନିଜ ଧନ୍ଦା ପାଇଁ ଶକ୍ତି ଆବଶ୍ୟକ କରନ୍ତି । ତା'ଛଡ଼ା ପ୍ରତ୍ୟେକ ଘରେ ରନ୍ଧାବଢ଼ା ଓ ଆଲୋକ ଆଦି ନିମନ୍ତେ ମଧ୍ୟ ଶକ୍ତି ଆବଶ୍ୟକ ।

ଉପରୋକ୍ତ ଆବଶ୍ୟକତା ଦୃଷ୍ଟିରୁ ଓଡ଼ିଶା ଏବଂ ଅନ୍ୟାନ୍ୟ ପ୍ରଦେଶର ପ୍ରତ୍ୟେକ ଗ୍ରାମକୁ ବିଦ୍ୟୁତ୍ ଶକ୍ତି ଯୋଗାଇବା ଲକ୍ଷ୍ୟ କେନ୍ଦ୍ର ତଥା ରାଜ୍ୟ ସରକାରମାନେ ଆଜକୁ ପ୍ରାୟ ୨୦ ବର୍ଷ ଆଗରୁ ସ୍ଥିର କରିଛନ୍ତି । କିନ୍ତୁ ଫଳ କ'ଣ ହୋଇଛି ? ଲକ୍ଷ୍ୟ ଯେ କେବଳ ସାଧିତ ହୋଇନାହିଁ ତାହା ନୁହେଁ, ଭବିଷ୍ୟତରେ କେବେ ସମ୍ଭବ ହେବ ତାହା ମଧ୍ୟ କହି ହେଉନାହିଁ । ରାଜ୍ୟ ବିଦ୍ୟୁତ୍‌ବୋର୍ଡମାନଙ୍କର ଆପ୍ରାଣ ଚେଷ୍ଟା ସତ୍ତ୍ୱେ ସହରାଞ୍ଚଳମାନଙ୍କରେ ତ ଦିନରେ ଅଧା ସମୟ ବିଦ୍ୟୁତ୍ ସରବରାହ ବନ୍ଦ ଥାଏ—ଗାଁ ଗଣ୍ଡା କଥା କିଏ ପଚାରେ ? ତେଣୁ ଗ୍ରାମବାସୀମାନେ କେବଳ ବିଦ୍ୟୁତ୍-ବୋର୍ଡ ଉପରେ ନିର୍ଭର ନକରି ବିକଳ୍ପ ଶକ୍ତିର ଚିନ୍ତା କରିବା ବାଞ୍ଛିତ ହେବ । ବିଶେଷକରି ଦୂରଦୂରାନ୍ତରେ ଏବଂ ଦୁର୍ଗମ ଅଞ୍ଚଳରେ ଅବସ୍ଥିତ ଗ୍ରାମମାନଙ୍କ ନିମନ୍ତେ ଏହା ନିତାନ୍ତ ଦରକାର ।

ବିକଳ୍ପ ଶକ୍ତିର କେତେକ ନିର୍ଦ୍ଦିଷ୍ଟ ସୁବିଧା ରହିଛି, ସେଗୁଡ଼ିକ ହେଲା—

୧ । ବିକଳ୍ପ ଶକ୍ତିଗୁଡ଼ିକ ପ୍ରଧାନତଃ ନବୀକରଣ ଯୋଗ୍ୟ (renewable) । ତେଣୁ ଉପଯୁକ୍ତ ପରିଚାଳନାଦ୍ୱାରା ଶକ୍ତି-ଉତ୍ସର ହ୍ରାସକୁ ପୂରଣ କରାଯାଇପାରିବ ।

୨ । ବାହ୍ୟସଂସ୍ଥା ଉପରେ ନିର୍ଭର ନକରି ଗ୍ରାମବାସୀମାନେ ନିଜନିଜଦ୍ୱାରା ଶକ୍ତିର ଯଥାର୍ଥ ଉପଯୋଗ ଓ ପରିଚାଳନା କରିପାରିବେ ।

୩ । ବିଦ୍ୟୁତ୍ ବୋର୍ଡ ମାନଙ୍କରୁ ବିଦ୍ୟୁତ ଆଣିବାଦ୍ୱାରା ଅଧିକ ମୂଳଧନ (capital) ବିଦ୍ୟୁତ ଉତ୍ପାଦନ ଏବଂ ସଞ୍ଚରଣରେ ଲାଗେ । ତା'ଛଡ଼ା ସଂଚରଣଦ୍ୱାରା ବିଦ୍ୟୁତ୍ଶକ୍ତିର ବହୁତ କ୍ଷୟ ଘଟିଥାଏ ।

୪ । ବିକଳ୍ପ ଶକ୍ତିର ଉପଯୋଗଦ୍ୱାରା ପରିବେଶ ମଧ୍ୟ ଅପେକ୍ଷାକୃତ ନିର୍ମଳ ରହିବ ।

ବର୍ତ୍ତମାନ ଦେଖାଯାଉ କି କି ପ୍ରକାରର ଶକ୍ତି ଗ୍ରାମବାସୀମାନେ ସହଜ ଉପାୟରେ ପ୍ରସ୍ତୁତ ଓ ବ୍ୟବହାର କରିପାରିବେ ।

## ଜାଳେଣି କାଠ ଏବଂ କୃଷିଜାତ ଆବର୍ଜନା ଜାଳେଣି

ରନ୍ଧନ ପାଇଁ ଏବଂ ଶୀତଋତୁରେ ଉତ୍ତାପ ପାଇଁ ଗ୍ରାମବାସୀମାନେ ମୁଖ୍ୟତଃ ଜାଳେଣିକାଠ କିମ୍ବା କ୍ଷେତପ୍ରସ୍ତୁତରୁ ଜାତ ଭିନ୍ନ ଆବର୍ଜନା—ଯଥା ଜାଠିକୁଟା, ପତ୍ର ବ୍ୟବହାର କରିଥାଆନ୍ତି । ଏକ ଜଣେ ଖାଦ୍ୟ ରାନ୍ଧିବାପାଇଁ ପ୍ରାୟ ୦.୨ କେ.ଜି ଜାଳେଣିକାଠ ଲାଗେ । ହିସାବକରି ଦେଖାଯାଇଛି ଯେ ଭାରତବର୍ଷରେ ବାର୍ଷିକ ୧୩.୩ କୋଟି ଟନ୍ ଜାଳେଣିକାଠ ଆବଶ୍ୟକ । କିନ୍ତୁ ବିଗତ ୩ ଦଶନ୍ଧିରେ ଏତେ ଜଙ୍ଗଲ କଟା ଯାଇଛି ଯେ ବର୍ତ୍ତମାନ ଜଙ୍ଗଲରୁ କେବଳ ୫ କୋଟି ଟନ୍ ଜାଳେଣିକାଠ ଆଣିବା ସମ୍ଭବ ହେଉଛି । ତେଣୁ ଅଭାବ ପଡୁଛି ୮.୩ କୋଟି ଟନ୍ । ସେଥିରୁ ପ୍ରାୟ ୨.୫ କୋଟି ଟନ୍ ଜାଳେଣିକାଠ ଘରେଇ ବାଡ଼-ବଗିଚାରୁ କିମ୍ବା ସ୍ଥାନୀୟ ଗଛମାନଙ୍କରୁ ଅଣାଯାଉଛି । ତା' ସତ୍ତ୍ୱେ ଯାହା ନିଅଣ୍ଟ ପଡୁଛି, ସେ ସବୁ ଗୋବର ଘସି କିମ୍ବା କୃଷି ଆବର୍ଜନା ଦ୍ୱାରା ମେଣ୍ଟାଯାଉଛି ।

ଲୋକ ସଂଖ୍ୟା ବଢ଼ିଚାଲିଛି କିନ୍ତୁ ଜଙ୍ଗଲ ହ୍ରାସ ପାଉଛି—ତେବେ ଜାଳେଣି ଆସିବ କେଉଁଠୁ ? ଏ ସମସ୍ୟା ବର୍ତ୍ତମାନ ଦେଶର ଯୋଜନାକାରୀମାନଙ୍କ ମୁଣ୍ଡ ଖାଉଛି । ବର୍ଷକୁ ହାରାହାରି ୨ କୋଟିରୁ ସାମାନ୍ୟ ଅଧିକ ଲୋକ ସଂଖ୍ୟା ବଢ଼ୁଛି । କିନ୍ତୁ ୧୭୦ ହଜାର ହେକ୍ଟର ଜଙ୍ଗଲ କମୁଛି । ଭାରତ ସରକାରଙ୍କ କୃଷିମନ୍ତ୍ରଣାଳୟର ହିସାବ ଅନୁଯାୟୀ ଆମକୁ ବର୍ଷକୁ ୦.୩ କୋଟି ହେକ୍ଟର ଜମିରେ ଅନ୍ତତଃ ପକ୍ଷେ ଆସନ୍ତା ଦଶବର୍ଷ ପର୍ଯ୍ୟନ୍ତ ବୃକ୍ଷରୋପଣ କଲେ ଆମର ଜାଳେଣି କାଠର ଅଭାବ ପୂର୍ଣ୍ଣ ହେବ । ଏସବୁ ତଥ୍ୟାଧାର ବର୍ତ୍ତମାନ ସାମାଜିକ ବନୀକରଣ ଯୋଜନାମାନ ପ୍ରସ୍ତୁତ ହେଉଛି ।

ପାଞ୍ଚଜଣ ଲୋକ ସଂଖ୍ୟା ବିଶିଷ୍ଟ ଏକ ପରିବାର ବର୍ଷକୁ ପ୍ରାୟ ୦.୨ ଟନ୍ ଜାଳେଣି କାଠ ବ୍ୟବହାର କରେ । ଏହି ପରିବାରକୁ ସ୍ୱାବଲମ୍ବୀ ହେବାକୁ ହେଲେ ତାକୁ ପ୍ରତିବର୍ଷ ପ୍ରାୟ ୫୦ଟି ଗଛ ଲଗାଇବାକୁ ପଡ଼ିବ । ଏହାଦ୍ୱାରା ସେ ପ୍ରତି ପାଞ୍ଚ ବର୍ଷରେ ୧୦ଟି ଗଛ କାଟି

ତା'ର ଆବଶ୍ୟକତା ମେଣ୍ଟାଇ ପାରିବ । ଏହା ଯେ କେତେଦୂର ସମ୍ଭବ ତାହା ସମସ୍ତେ ସହଜରେ ଅନୁମାନ କରିପାରିବେ ।

ଗ୍ରାମମାନଙ୍କରେ ତେଣୁ କାଠ ବଦଳରେ ପଥରକୋଇଲାର ବହୁଳ ବ୍ୟବହାର ଆବଶ୍ୟକ । କିନ୍ତୁ ଅତି ଗରିବ ଲୋକମାନଙ୍କ ପକ୍ଷେ କୋଇଲା କିଣିବାକୁ ସମ୍ବଳ ନଥାଏ । ତେଣୁ ସେମାନଙ୍କୁ ମାଗଣାରେ ବା ଶସ୍ତା ଦରରେ କୋଇଲା ଯୋଗାଇବା ଦରକାର । ତା'ଛଡ଼ା ସରେଇ କାଠ ଚୁଲ୍ଲୀମାନଙ୍କର ଡିଜାଇନ୍‌ର ପରିବର୍ତ୍ତନଦ୍ୱାରା କାଠର ବ୍ୟୟ ସଙ୍କୋଚ ସମ୍ଭବ ।

## ବାୟୋଗ୍ୟାସ୍

ଆମ ଗାଁ-ଗଣ୍ଡାରେ ଗାଈଗୋରୁଙ୍କର ଅଭାବ ନାହିଁ । ସାରା ପୃଥିବୀରେ ଥିବା ଗାଈଗୋରୁଙ୍କ ସଂଖ୍ୟାରେ ପ୍ରାୟ ଏକ-ଚତୁର୍ଥାଂଶ ଭାରତବର୍ଷରେ ଅଛି । କିନ୍ତୁ ସେମାନଙ୍କ ଗୋବରର ଉପଯୁକ୍ତ ବ୍ୟବହାର କରାଯାଉ ନାହିଁ । ପ୍ରଧାନତଃ ଗୋବରକୁ ଶୁଖାଇ ଘଷି କରାଯାଇ ଜାଳେଣୀରେ ବ୍ୟବହାର କରାଯାଏ କିମ୍ବା ତାକୁ ଖତଭାବେ କ୍ଷେତଜମିରେ ଦିଆଯାଏ—କିନ୍ତୁ ଉଭୟ କାର୍ଯ୍ୟରେ ଲାଗିପାରେ ନାହିଁ । ସାଧାରଣତଃ ଦୈନିକ ଗୋଟିଏ ମଇଁଷି ୧୫ କେ.ଜି, ଗୋଟିଏ ଗାଈ ୧୦ କେ.ଜି ଓ ଗୋଟିଏ ବାଛୁରୀ ୫ କେ.ଜି ଗୋବର ଦେଇଥାଏ । ସେ ଗୋବରକୁ ଯଦି ଗୋବର ଗ୍ୟାସ୍ ବା ବାୟୋଗ୍ୟାସ୍‌ରେ ପରିଣତ କରାଯାଏ ସେଥିରୁ ଶକ୍ତି ଉତ୍ପନ୍ନ କରାଯାଇପାରିବ ଏବଂ ତା' ସଙ୍ଗେ ତାହାକୁ ଖତଭାବେ ମଧ୍ୟ ବ୍ୟବହାର କରାଯାଇ-ପାରିବ ।

ଗୋଟିଏ ୫ ଜଣିଆ ସଂଖ୍ୟା ବିଶିଷ୍ଟ ପରିବାରର ରୋଷେଇ ପାଇଁ ଦୈନିକ ପ୍ରାୟ ୧.୫ ଘନମିଟର ଗ୍ୟାସ୍ ଆବଶ୍ୟକ ହୋଇଥାଏ । ପ୍ରାୟ ଛଅଟି ଗାଈ ବା ମଇଁଷିର ଗୋବରରୁ ଦୈନିକ ପ୍ରାୟ ୨ ଘନମିଟର ଗ୍ୟାସ୍ ପ୍ରସ୍ତୁତ କରାଯାଇପାରିବ । ଯଦି ଗୋଟିଏ କୃଷି ପରିବାରରେ ଦୁଇଟି ଗାଈ ଓ ଦୁଇଟି ବଳଦ ଥାଏ, ସେ ପରିବାରର ରୋଷେଇ ପାଇଁ ଆବଶ୍ୟକ ଗ୍ୟାସ୍ ପାଇଁ ମଧ୍ୟ ଦୈନିକ ପ୍ରାୟ ୦.୫ ଘନମିଟର ଗ୍ୟାସ୍ ବଳକା ପଡ଼ିବ । ତାହାକୁ ଘରେ ଆଲୁଅ ଜଳାଇବା ପାଇଁ ବା ଅନ୍ୟ କାର୍ଯ୍ୟରେ ବ୍ୟବହାର କରାଯାଇ ପାରିବ । ଗୋଟିଏ ୫୦ ଓ୍ୱାଟ୍ ବଲ୍‌ବ ଜଳିବା ପାଇଁ ଦିନକୁ ୧ ଘନମିଟର ଗ୍ୟାସ୍ ଏବଂ ଗୋଟିଏ ଏକ ଅଶ୍ୱ କ୍ଷମତା ବିଶିଷ୍ଟ ମୋଟର ୧ ଘଣ୍ଟା ଚଳାଇବା ପାଇଁ ପ୍ରାୟ ୦.୫ ଘନମିଟର ଗ୍ୟାସ୍ ପ୍ରୟୋଜନ ହୁଏ । ଏପରି ପରିବାରର ବ୍ୟବହାର ଉପଯୋଗୀ ଗୋବର ଗ୍ୟାସ୍ ପ୍ଲାଣ୍ଟ୍ ତିଆରି ପାଇଁ ପ୍ରାୟ ୫-୬ ହଜାର ଟଙ୍କା ଖର୍ଚ୍ଚ ହୁଏ । ସେ ଆବଶ୍ୟକ ଟଙ୍କାର ପ୍ରାୟ ଶତକଡ଼ା ୫୦ ଭାଗରୁ ଅଧିକ ଅଂଶ ସାହାଯ୍ୟ ବା ଋଣଭାବେ ମିଳିପାରୁଛି । ଏଣୁ ଆଜିକାଲିର ମହଙ୍ଗା ଯୁଗରେ ଏପରି ଏକ ପ୍ଲାଣ୍ଟ୍ ତିଆରି ଖର୍ଚ୍ଚ ଅତ୍ୟଧିକ ନୁହେଁ ଏବଂ ଗ୍ରାମମାନଙ୍କରେ ଧନୀ ବା ମଧ୍ୟବିତ୍ତ ବ୍ୟକ୍ତିମାନେ ଏହା ଘରେ ରଖିପାରିବେ ।

ମତ ଗୋଟିଏ ଗ୍ରାମରେ ଘରେ ଘରେ ଏପରି ଗୋବର ଗ୍ୟାସ୍ ପ୍ଲାଣ୍ଟ ବସାଇବା ସୁବିଧା-ଜନକ ନହୁଏ, ସମ୍ଭବତଃ ଏକ ବଡ଼ ପ୍ଲାଣ୍ଟର ନିର୍ମାଣ ସମ୍ଭବ ଅଟେ। ଏହାଦ୍ୱାରା ସମସ୍ତ ଗ୍ରାମର ବୈଦ୍ୟୁତିକରଣ ଏବଂ ଅନ୍ୟାନ୍ୟ ଛୋଟଛୋଟ ଶ୍ରେଷ୍ଠ ଶ୍ରେଷ୍ଠ କାର୍ଯ୍ୟ କରାଯାଇ ପାରିବ। ଗୋବର ବ୍ୟତୀତ ମଣିଷମଳ ମଧ୍ୟ ବାୟୋଗ୍ୟାସ୍ ପ୍ରସ୍ତୁତରେ ଲାଗିପାରିବ। ଏଥି ନିମନ୍ତେ ଗ୍ରାମରେ ଗୋଟିଏ ସର୍ବସାଧାରଣଙ୍କ ବ୍ୟବହାର ପାଇଁ ପାଇଖାନା ଆବଶ୍ୟକ। ଏହାଦ୍ୱାରା ଏକ ପ୍ରଧାନ ଉପକାର ସାଧିତ ହେବ ଯେ ଲୋକେ ବିଲବାଡ଼ି ବା ପଡ଼ିଆ-ମାନଙ୍କରେ ମଳତ୍ୟାଗ ନକରି ପରିବେଶ ନିର୍ମଳ ରଖିବେ। ଗବେଷଣାଦ୍ୱାରା ଜଣାଯାଇଛି ଯେ ଗୋବର ବା ମଳ ବ୍ୟତୀତ ଗ୍ରାମର ଅନ୍ୟାନ୍ୟ ଜୈବିକ ଆବର୍ଜନା ମଧ୍ୟ ବାୟୋଗ୍ୟାସ୍ ପ୍ଲାଣ୍ଟରେ ବ୍ୟବହାର କରାଯାଇପାରିବ। କିନ୍ତୁ ଏଥିନିମନ୍ତେ ସାଧାରଣ ପ୍ଲାଣ୍ଟର ଡିଜାଇନ୍‌ର ଆବଶ୍ୟକ ପରିବର୍ତ୍ତନ କରିବାକୁ ପଡ଼ିବ।

ଗୋବରର ପାରମ୍ପରିକ ବ୍ୟବହାର ଅପେକ୍ଷା ବାୟୋଗ୍ୟାସ୍ ଉତ୍ପାଦନରେ ବ୍ୟବହାରଦ୍ୱାରା ନିମ୍ନଲିଖିତ ଉପକାର ସାଧିତ ହୋଇଥାଏ।

୧। ଅମ୍ଳଜାନଶୂନ୍ୟ ପାଚନ ପଦ୍ଧତିଥିବାହେତୁ ବାୟୋଗ୍ୟାସ୍ ପ୍ଲାଣ୍ଟରୁ ଅଧିକ କୃଷିଉପଯୋଗୀ ସାର ପ୍ରସ୍ତୁତ ହୁଏ।

୨। ପ୍ଲାଣ୍ଟ-ସାର ସାଧାରଣ କମ୍ପୋଷ୍ଟ ଠା ଅପେକ୍ଷା ଉତ୍କୃଷ୍ଟତର। ଗୋବରଖତରେ ଶତକଡ଼ା ପ୍ରାୟ ୦.୭୫ ଭାଗ ନାଇଟ୍ରୋଜେନ୍ ଥାଏ। କିନ୍ତୁ ପ୍ଲାଣ୍ଟ-ସାରରେ ଏହାର ପରିମାଣ ପ୍ରାୟ ୧.୫% ଅଟେ।

୩। କଞ୍ଚା ଗୋବର କମ୍ପୋଷ୍ଟରେ ପରିଣତ ହେବାକୁ ଅନ୍ତତଃ ୮-୪ ମାସ ଲାଗିଥାଏ। କିନ୍ତୁ ଗୋବର ଗ୍ୟାସ୍ ପ୍ଲାଣ୍ଟରେ ତାହା ୨ ଦିନରେ ସମ୍ଭବ ହୁଏ।

୪। ପ୍ଲାଣ୍ଟ-ସାରର କୌଣସି ଦୁର୍ଗନ୍ଧ ନଥାଏ ଏବଂ ତାହା ମାଟିରେ ଭଲଭାବେ ମିଶିପାରେ। ଏହାର ଜଳଧାରଣ କ୍ଷମତା ଅଧିକ।

୫। ବାୟୋଗ୍ୟାସ୍ ଧୂମବର୍ଜିତ ନୀଳ ଶିଖାରେ ଜଳେ। ଏହାର ତାପୀୟ-ଦକ୍ଷତା କୋଇଲା ପ୍ରଭୃତି ଜାଳେଣୀ ଅପେକ୍ଷା ଅଧିକ ଅଟେ।

## ସୌରଶକ୍ତି

ସୂର୍ଯ୍ୟ ସୌରଜଗତ୍‌ର ସମସ୍ତ ଶକ୍ତିର ମୂଳଉତ୍ସ ଅଟେ। କିନ୍ତୁ ଏହି ସୂର୍ଯ୍ୟ ରଶ୍ମିରୁ ଶକ୍ତି ଆମେ ସିଧାସଳଖ ଭାବେ ବିନିଯୋଗ କରୁନାହିଁ। ଇଞ୍ଜିନିୟରଙ୍କ ଭାଷାରେ ସୌରଶକ୍ତି ଏକ ନିକୃଷ୍ଟ ଶକ୍ତି (low grade energy) ଭାବେ ପରିଗଣିତ ହୁଏ; କାରଣ ଏହାର ବିନିଯୋଗ ଦକ୍ଷତା କମ୍ ଅଟେ। ଭାରତ ପରି ଅନ୍ୟାନ୍ୟ ବିକାଶଶୀଳ ଦେଶମାନଙ୍କରେ ଅପେକ୍ଷାକୃତ ବହୁ ପରିମାଣରେ ସୌରରଶ୍ମି ପତିତ ହୁଏ, କିନ୍ତୁ ଦୁର୍ଭାଗ୍ୟର ବିଷୟ ଯେ ସେ ଦେଶମାନେ ଦରିଦ୍ର ଦେଶମାନଙ୍କ ମଧ୍ୟରେ ଅନ୍ତର୍ଗତ। ଉଦାହରଣ ସ୍ୱରୂପ ଭାରତବର୍ଷର

ଭୂପୃଷ୍ଠରେ ଦୈନିକ ପ୍ରତି ବର୍ଗ ସେଣ୍ଟିମିଟର ପିଚ୍ଛା ୪୭୦ କ୍ୟାଲୋରି (ବାଷ୍ପକ ହାରାହାରି) ସୌରତାପ ପଡ଼ିଥାଏ । ସେ ତାପର ଉପଯୁକ୍ତ ବିନିଯୋଗ କରିପାରିଲେ ଦେଶର ଶକ୍ତି ସଙ୍କଟ ସଂପୂର୍ଣ୍ଣରୂପେ ସମାଧାନ ହେବ ଏବଂ ଦେଶବାସୀ ସୁଖସ୍ୱଚ୍ଛନ୍ଦରେ ଜୀବନ ଯାପନ କରିପାରିବେ ।

ଅବହମାନ କାଳରୁ ଅସୀମ ସୌରଶକ୍ତିରେ ଲୁଗାପଟା ଓ ଖାଦ୍ୟପଦାର୍ଥ ଶୁଖାଇବା, ସମୁଦ୍ର ଜଳ ଶୁଖାଇ ଲୁଣ ଆମଦାନି ପ୍ରଭୃତି ବିଭିନ୍ନ କାର୍ଯ୍ୟରେ ବ୍ୟବହାର କରିଆସୁଛୁ । ତା'ଛଡ଼ା ଅବଶ୍ୟ ସର୍ଯ୍ୟାଲୋକ କୃଷିକାର୍ଯ୍ୟରେ ସବୁଦା ଲାଗିଥାଏ । ଉପରୋକ୍ତ କେତୋଟି କାର୍ଯ୍ୟ ଛଡ଼ା ସୌରଶକ୍ତିର ବହୁଳ ବ୍ୟବହାର ଏପର୍ଯ୍ୟନ୍ତ ହୋଇନାହିଁ; କିନ୍ତୁ ବୈଜ୍ଞାନିକମାନଙ୍କ ମତରେ ଏହା ଭବିଷ୍ୟତରେ ଏକ ପ୍ରଧାନ ବ୍ୟାବହାରିକ କ୍ଷେତ୍ରରେ ପରିଣତ ହେବ । ଗ୍ରାମାଞ୍ଚଳରେ ସୌରଶକ୍ତିର କ୍ଷୁଦ୍ରତ୍ତ୍ୱ (micro level) ବହୁଳ ବ୍ୟବହାର ସମ୍ଭବ ।

ଜଳ ଉତ୍ତପ୍ତକାରୀ ସୌରଯନ୍ତ୍ର (solar water heater) ସୌର ପାଚକ (solar-cooker), ସୌର ଇଞ୍ଜିନ୍ (solar engine), ସୌର ଭାଟି (solar kiln), ସୌର ପାଣିପମ୍ପ (solar water pump) ଇତ୍ୟାଦି ଯନ୍ତ୍ରପାତି ଉଦ୍ଭାବନ ହୋଇସାରିଲାଣି । ସେସବୁର ବ୍ୟବହାର ଗ୍ରାମମାନଙ୍କରେ କରିଗଲେ ଅଯଥା ବିଦ୍ୟୁତ୍‌ଶକ୍ତି ଉପରେ ନିର୍ଭର କରିବାକୁ ପଡ଼ିବ ନାହିଁ । ସୌର ସେଲ୍ (solar cell) ସାହାଯ୍ୟରେ ବିଦ୍ୟୁତ୍-ଆଲୋକ ପାଇବା ସମ୍ଭବ । ପରୀକ୍ଷାମୂଳକ ଭାବରେ ଗୁଜୁରାଟ ଓ ଦିଲ୍ଲୀ ନିକଟବର୍ତ୍ତୀ କେତେକ ଗ୍ରାମରେ ଏପରି ବିଦ୍ୟୁତ ଆଲୋକ ଯୋଗାଇଦିଆଯାଇପାରିଛି । କିନ୍ତୁ ଏପର୍ଯ୍ୟନ୍ତ ବାଣିଜ୍ୟିକ ଭିତ୍ତିରେ ଏହାର ବ୍ୟବହାର କରାଯାଇପାରିନାହିଁ । ଆଶା କରାଯାଏ ନିକଟ ଭବିଷ୍ୟତରେ ଏହା ସମ୍ଭବ ହେବ ।

କୃଷିକର୍ମରେ ସୌରଶକ୍ତିର ବ୍ୟବହାରପାଇଁ ଭାରତରେ ବହୁତ ସମ୍ଭାବନା (scope) ରହିଛି । ସୌରଶକ୍ତିଚାଳିତ ପମ୍ପଦ୍ୱାରା ଜଳସେଚନ ସମ୍ଭବ ହେଲାଣି । ଫସଲ ସଂରକ୍ଷଣପାଇଁ ଧାନ ଓ ଅନ୍ୟାନ୍ୟ ଫସଲ ଖରାରେ ଶୁଖାଇବା କଥା ଆଗରୁ ଚଳିଆସୁଛି । କିନ୍ତୁ ଶସ୍ୟଭଣ୍ଡାରମାନଙ୍କରେ ବଡ଼ ବଡ଼ ଫଳକ ଖଞ୍ଜି ପ୍ରଚୁର ପରିମାଣରେ ଶସ୍ୟକୁ ଏକା ସଙ୍ଗେ ଶୁଖ ଗଲେ କେତେ ସୁବିଧାଜନକରେ ଶସ୍ୟ ଓ ପନିପରିବା ଶୁଖାଇବେ ନାହିଁ । ସୌରଶକ୍ତି ସାହାଯ୍ୟରେ ବଡ଼ ବଡ଼ ସବୁଜଶାଳା ପ୍ରତିଷ୍ଠା କରାଯାଇ ପନିପରିବା ଓ ଫୁଲ ଇତ୍ୟାଦି ଚାଷ କରାଯାଇପାରିବ ।

ବହୁତ ଉଦ୍ଭିଦମାନଙ୍କର ଆଲୋକ ସାହାଯ୍ୟରେ ସଂଶ୍ଳେଷଣ ଦକ୍ଷତା (photo-synthetic efficiency) ଅଳ୍ପ ଅଟେ । ଏହି ଦକ୍ଷତା ଘାସ, ମକା, ଶୈଳ (algae) ପ୍ରଭୃତିରେ ଅଧିକ ଥାଏ (ପ୍ରାୟ ୯%) । ଅଧିକ ସୌରଶକ୍ତି ବ୍ୟବହାରଦକ୍ଷ ଫସଲ ସୃଷ୍ଟିକଲେ ଫସଲର ଅମଳ ବୃଦ୍ଧିପାଇପାରିବ ।

## ଅନ୍ୟାନ୍ୟ ବିକଳ୍ପ ଶକ୍ତି

ଅନ୍ୟାନ୍ୟ ବିକଳ୍ପ ଶକ୍ତିଗୁଡ଼ିକ, ଯଥା—ଜୈବବସ୍ତୁ, ସମୁଦ୍ର ବାୟୁପ୍ରବାହ, ଛୋଟ ଝରଣା ବା ଜଳପ୍ରପାତ ଅନେକ ଗ୍ରାମମାନଙ୍କ ନିକଟରେ ମିଳିଥାଏ । ଉଦାହରଣ ସ୍ୱରୂପ ସମୁଦ୍ରକୂଳ ଗାଁମାନଙ୍କରେ ପବନସ୍ରୋତ ପ୍ରଚୁର ଥାଏ । ପବନକଳ (wind mill) ସାହାଯ୍ୟରେ ସେଥିରୁ ଶକ୍ତି ଉତ୍ପାଦନ ସମ୍ଭବ ଏବଂ ସୁବିଧାଜନକ । ଏପରି ମିଲ୍ ଗୁଜୁରାଟର କଚ୍ଛରେ ବହୁତ ଦେଖିବାକୁ ମିଳେ । ପାହାଡ଼ିଆ ଅଞ୍ଚଳମାନଙ୍କରେ ଛୋଟ ବଡ଼ ବହୁତ ଝରଣା ଓ ଜଳପ୍ରପାତ ଥାଏ । ବଡ଼ ଜଳପ୍ରପାତମାନଙ୍କରୁ ଅବଶ୍ୟ ବିଦ୍ୟୁତ୍ଶକ୍ତି ଉତ୍ପାଦନ କରାଯାଉଛି । ଓଡ଼ିଶାର ଦକ୍ଷିଣସୀମା ନିକଟବର୍ତ୍ତୀ ମାଛକୁଣ୍ଡରେ ଏକ ପ୍ରାକୃତିକ ଜଳପ୍ରପାତରୁ ବିଦ୍ୟୁତ୍ଶକ୍ତି ବାହାର କରାଯାଉଛି । କିନ୍ତୁ ଗ୍ରାମନିକଟବର୍ତ୍ତୀ ଛୋଟ ଛୋଟ ଝରଣାରୁ କଥିତ ପନ୍ଥାମାନରେ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରାଗଲେ ନିକଟବର୍ତ୍ତୀ ଅଞ୍ଚଳରେ ଶକ୍ତିସଙ୍କଟର ସମାଧାନ ହେବ । ଏପରି ଛୋଟ ଛୋଟ ଯୋଜନାଦ୍ୱାରା ପରିବେଶ ଉପରେ କୁପ୍ରଭାବ ପଡ଼େନାହିଁ ।

ଯେଉଁ ଅଞ୍ଚଳମାନଙ୍କରେ ଜୈବପ୍ରବାହ ରହିଛି ସେଠାରେ ବିଦ୍ୟୁତ୍ ଶକ୍ତି ଉତ୍ପାଦନ ସହଜସାଧ୍ୟ । ଉତ୍ତରପ୍ରଦେଶରେ ଆଉସନ୍ଧ୍ୟ ଏକ ଅତି ଝଡ଼ା ଦେଶ । ତାହାର ରାଜଧାନୀରେ ବ୍ୟବହୃତ ସମସ୍ତ ଶକ୍ତି ନିକଟବର୍ତ୍ତୀ ଅନେକ ଜୈବପ୍ରସୂ ବସ୍ତୁରୁ ପ୍ରସ୍ତୁତ କରାଯାଉଛି ।

ସୁଖର ଖବର ଯେ ଉଭୟ ଭାରତ ଏବଂ ଓଡ଼ିଶା ସରକାର ବିଭିନ୍ନ ବିକଳ୍ପଶକ୍ତିର ବ୍ୟବହାର ଓ ବିକାଶ ନିମନ୍ତେ ଚିନ୍ତା କରିବାକୁ ଲାଗିଲେଣି । ଭାରତ ସରକାର Department of Alternate Energy Sources ନାମକ ଏକ ନୂତନ ବିଭାଗ ସୃଷ୍ଟିକଲେଣି । ସେହିପରି ଗଲ ଡିସେମ୍ବର ହେଲା Orissa Renewable Energy Development Agency (OREDA) ନାମକ ଏକ ସଂସ୍ଥା ଓଡ଼ିଶା ସରକାର ଆରମ୍ଭ କରିଛନ୍ତି । ଦେଖାଯାଉ ଏପରି ସଂସ୍ଥାଗୁଡ଼ିକ କିପରି କାମ କରୁଛନ୍ତି ନା ସରକାରଙ୍କ ନାଲିଫିତାରେ ବନ୍ଧାଯାଇ ବ୍ୟୁରୋକ୍ରାଟମାନଙ୍କ ପରି ଧଳାହାତୀରେ ପରିଣତ ହେଉଛନ୍ତି !

# ଜଙ୍ଗଲ

ଜଗଜ୍ଜନଙ୍କ ନିମନ୍ତେ ବୃକ୍ଷ ଯେ ରୋପଇ
ସେ ପ୍ରାଣୀ ଅମର ଧାମେ ଅନ୍ତମେ ଚଳଇ ।

ମାନବଜାତିର ଜଙ୍ଗଲ ସହିତ ସମ୍ପର୍କ ବହୁ ପୁରୁଣାକାଳରୁ ରହିଆସିଛି । ବିନା ଖାଦ୍ୟ ଓ ଜଳରେ ମନୁଷ୍ୟ କିଛି ଦିନ ବଞ୍ଚିପାରେ, କିନ୍ତୁ ବାୟୁବିନା ଜୀବନ ଅସମ୍ଭବ । ବୃକ୍ଷ ନିରବଚ୍ଛିନ୍ନ ଭାବେ ଅମ୍ଳଜାନ ଯୋଗାଇଥାଏ । କଳକାରଖାନା ବଢ଼ିବା ସଙ୍ଗେ ସଙ୍ଗେ ଜଙ୍ଗଲମାନ କମୁଛି ଓ ବାୟୁମଣ୍ଡଳରେ ଅମ୍ଳଜାନ କମି ଅଙ୍ଗାରକାମ୍ଳ ବଢ଼ୁଛି । ଏହା ଛଡ଼ା ପୃଥିବୀର ତାପମାତ୍ରା ବଢ଼ୁଛି, ଯାହାରେ ବାତାବରଣ ଗରମ ହେଉଛି ଏବଂ ମନୁଷ୍ୟ ନିଜେ ବିପଦର ସମ୍ମୁଖୀନ ହେବାକୁ ଯାଉଛି । ଜଙ୍ଗଲରୁ ଗଛ କମିଲେ ବର୍ଷା କମିଯାଏ, ଜମିରେ ବାଲିଚର ମାଡ଼େ । ଜଙ୍ଗଲରେ ଗଛ ଥିଲେ ମୃତ୍ତିକା ସଂରକ୍ଷିତ ହୁଏ । ଗଛର ଚେର ମାଟିକୁ ଧରିରଖିବା ସଙ୍ଗେ ସଙ୍ଗେ ପାହାଡ଼ରୁ ଅତିବେଗରେ ଗଡ଼ି ଆସୁଥିବା ଜଳର ବେଗକୁ କମାଇଦିଏ । ସେହିଭଳି ଜଙ୍ଗଲର ଗଛ ପବନକୁ ଧୂଳି ଛାଣି ରଖିବା ସଙ୍ଗେ ସଙ୍ଗେ ପବନର ଗତି ହ୍ରାସ କରିଥାଏ । ଗତ କେତେକ ବର୍ଷ ଧରି ଆମେ କେବଳ ଜଙ୍ଗଲ କାଟିବାରେ ଲାଗିଛୁ ଓ ଆମ ଅଗରେ ପ୍ରଭାବଶାଳୀ ବ୍ୟକ୍ତି ଓ ଜଙ୍ଗଲ ଠିକାଦାରମାନେ ଜଙ୍ଗଲ ଲୁଣ୍ଠନ କଲାବେଳେ ଆମେ ନୀରବ ହୋଇ ରହିଛୁ । ଆମ ନୀରବତା ଫଳରେ ଦେଶରୁ ୭୫ ଭାଗ ଜଙ୍ଗଲ ଲୋପ ପାଇଗଲାଣି । ଏବେ ଜାଳେଣି କାଠ ପାଇଁ ଗାଁରେ ସ୍ତ୍ରୀଲୋକମାନେ ମାଇଲ୍ ମାଇଲ୍ ଯିବାକୁ ପଡ଼ୁଛି ଏବଂ ପୁରାଦିନ କାଠ ସଂଗ୍ରହ କରିବାରେ ନଷ୍ଟ ହେଉଛି । ଘରର ଛୁଅ ବାଉଁଶ ମଧ୍ୟ ପୁଞ୍ଜାଧାରେ ମିଳିବା କଷ୍ଟକର ହେଲାଣି । ଜଙ୍ଗଲ ନଷ୍ଟ କରିବାର ଫଳ ଆମେ ନିଜେ ଭୋଗୁଛୁ ।

ଏ ସବୁ କହିଲା ବେଳକୁ ପିଲାଦିନର ଅଜା ଆଇମା କାହାଣୀ ମନେପଡ଼େ । ଥରେ ଗୋଟିଏ ଗାଁରେ ବର୍ଷବର୍ଷ ଧରି ମରୁଡ଼ି ପଡ଼ିଲା । ବର୍ଷା ହେଲାନାହିଁ । କୂଅ ପୋଖରୀ ଶୁଖିଗଲା । ସବୁ ଘରୁ ଶୀଘ୍ରଗରୁ ଭଲ ଜଣାଗଲା । ଗ୍ରାମବାସୀମାନେ ବହୁତ ହଇରାଣ ହେଲେ । ଗାଁର ପୁରୁଖା ଲୋକମାନେ ସମସ୍ତେ ଏକ ଯଜ୍ଞ କରିବାକୁ କହିଲେ । କିନ୍ତୁ କେହି ଏଥିରେ ମନ ଦେଲେନି ଓ ବିଶ୍ୱାସ ମଧ୍ୟ କଲେନି । କିନ୍ତୁ ବହୁ କଷ୍ଟ ପରେ ଅନ୍ୟ ଉପାୟ ନଦେଖି ପୁରୁଖା ଲୋକମାନଙ୍କ କଥା ମାନି ଶିବ ପୂଜା ଯଜ୍ଞ ଆରମ୍ଭ କଲେ । ୪ ଦିନ ୪ ରାତି ଯଜ୍ଞ କଲାପରେ ଶିବଙ୍କ ନିଦ ଭାଙ୍ଗିଲା । ସେ ଲୋକମାନଙ୍କ ଦୁଃଖ ଜାଣି ବରୁଣ ଦେବତାଙ୍କୁ ସ୍ମରଣ କଲେ । ବରୁଣ ଦେବତା ପହଞ୍ଚିଲା ପରେ ତାଙ୍କୁ ଲୋକମାନଙ୍କର ଦୁଃଖ ଲାଘବ ପାଇଁ ଆଜ୍ଞାଦେଲେ ଓ ତପସ୍ୟାରେ ମଗ୍ନହେଲେ । ବୃଷ୍ଟି ବୃଷ୍ଟି ମେଘ ଘୋଟି ଆସିଲା । ଦିନ ଯାଉ ଦିନ ଭଳି ଦେଖାଗଲା ନାହିଁ । ଏହା ଦେଖି ଗ୍ରାମବାସୀମାନେ ବହୁତ ଆନନ୍ଦିତ ହେଲେ । ମେଘ-

ଝଡ଼ମାନ ଛୁଟିଆସିବାର ଦେଖାଗଲା । ଲୋକଙ୍କ ଆନନ୍ଦ କହିଲେ ନସରେ । କିନ୍ତୁ ସେ ଆନନ୍ଦ କ୍ଷଣିକ ପାଇଁ ଥିଲା । ଦେଖୁ ଦେଖୁ ମେଘଖଣ୍ଡମାନ ସେ ଗାଁ । ଉପରେ କିଛି ସମୟ ରହି ତା' ପରେ ଦୂରକୁ ଖସିଯିବାକୁ ଲାଗିଲା । ଖସି ଖସି ଯାଇ ୧-୨ କୋଶ ଦୂରରେ ବର୍ଷା ହେଲା । ଏହା ଦେଖି ଗ୍ରାମବାସୀମାନେ ବହୁତ ଦୁଃଖକଲେ ଏବଂ ପୁଣି ପୂଜା ଆରମ୍ଭକଲେ । ଶିବଙ୍କର ତପସ୍ୟା ଭଙ୍ଗହେଲା ଓ ତାଙ୍କ ଆଜ୍ଞା ନମାନିଥିବାରୁ ବରୁଣ ଦେବତାଙ୍କୁ ଏପରିକରିବାର କାରଣ ପଚାରିଲେ । ବରୁଣ ଦେବତା କହିଲେ, "ପ୍ରଭୋ, ଆପଣ ଆଜ୍ଞା କରିଥିଲେ ଗ୍ରାମବାସୀମାନଙ୍କର ଦୁଃଖ ଲାଘବ ନିମନ୍ତେ । ମୁଁ ଯାଇ ଦେଖିଲି ଯେ ବର୍ଷା କରାଇଥିଲେ ତାଙ୍କ ଦୁଃଖ ଆହୁରି ଅଧିକା ହୋଇ-ଥାନ୍ତା । କାରଣ ମୋର ପୃଥିବୀକୁ ମଙ୍ଗଳପାଇଁ ଯିବାକୁ ହେଲେ ଏକ ବାଟ ଦରକାର । ଏହା ଜଙ୍ଗଲର ବୃକ୍ଷମାନେ ହିଁ କରିଥାନ୍ତି । ସେ ଗ୍ରାମକୁ ମୋ ଯିବାପାଇଁ ବାଟ ନାହିଁ । ମୁଁ ଯଦି ବଳପୂର୍ବକ ପହଞ୍ଚିଥାନ୍ତି ତେବେ ସେଠାରେ ବନ୍ୟା ହୋଇଥାନ୍ତା, ଜମିରେ ବାଲିଚର ହୋଇଥାନ୍ତା, ଘରଦ୍ୱାର ଭାଙ୍ଗିଥାନ୍ତା । ଯେହେତୁ ଆପଣଙ୍କର ଆଜ୍ଞା ଥିଲା ଗ୍ରାମବାସୀଙ୍କର ମଙ୍ଗଳପାଇଁ, ସେଥିପାଇଁ ମୁଁ ଅମଙ୍ଗଳ ନକରି ଚାଲିଆସିଲି ।" ଶିବଙ୍କର ଆଉ କିଛି କହିବାର ନଥିଲା । ସେ ସ୍ୱପ୍ନରେ ଗ୍ରାମମୁଖିଆଙ୍କୁ ସପନାଇ ସବୁ କଥା ବତାଇଲେ । ଗ୍ରାମମୁଖିଆ ପରଦିନ ଲୋକଙ୍କୁ ସବୁ କହିଲେ ଓ ଭାରତର ଧର୍ମଗ୍ରନ୍ଥରୁ ବୃକ୍ଷରୋପଣରେ 'ପୁଣ୍ୟଫଳ' ଶୁଣାଇଲେ ।

"ତାଳପତ୍ର ଛତା ଯେବେ ବିପ୍ର କରେ ଦାନ
ପଥେ ବାଟେ ଯେହୁ କରେ ବୃକ୍ଷକୁ ରୋପଣ ।
ସେହି ଛାୟା ଦାନେ ମହାସୁଖ ସେ ଭୁଞ୍ଜଇ
ଯେଣୁ ପଥିକମାନଙ୍କ ଶ୍ରମ ନିବାରଇ ।
ଏହି ଛାୟାଦାନ ଫଳେ ପିତୃଗଣ ତାର
ନରକରୁ ଅବିଳମ୍ବେ ହୁଅନ୍ତି ଉଦ୍ଧାର ।
ସର୍ବପାପରୁ ସେ ପ୍ରାଣୀ ଲଭଇ ମୁକତି
ଶାସ୍ତ୍ରର ପ୍ରମାଣ ଏହା କହିଲି ସତ୍ୟ ।
ବାଟେ ଘାଟେ ବୃକ୍ଷ ରୋପିଥାଏ ଯେଉଁ ନର
ସେ ବୃକ୍ଷମାନଙ୍କେ ହୁଏ ଯେତେକ ପତ୍ର ।
ସେତେ ବର୍ଷ ରହେ ସେହି ଅମର ନଗରେ
ଦେବତାଙ୍କ ସଙ୍ଗେ ଦିବ୍ୟ-ସୁଖ ଭୋଗକରେ ।
ତାର ପିତୃଗଣ ସ୍ୱର୍ଗେ ସେତକ ବରଷ
ଅତି ଆନନ୍ଦରେ ସର୍ବେ କରିଥାନ୍ତି ବାସ ।
ଜୀବଜନ୍ତୁଙ୍କ ନିମନ୍ତେ ବୃକ୍ଷ ଯେ ରୋପଇ
ସେ ପ୍ରାଣୀ ଅମରଧାମେ ଅନ୍ତେ ଚଳଇ ।
ଜନ୍ତୁମାନେ ବୃକ୍ଷ ପତ୍ର କରନ୍ତି ଆହାର

ସନ୍ତୋଷ ହୁଅନ୍ତି ସେଣୁ ଆହେ ମୁନିବର ।
ବୃକ୍ଷ ରୋପିଥିବା ଜନ ସେହି ପୁଣ୍ୟ ଫଳେ
ଅପୁର୍ବ ସୁଖ ଭୁଞ୍ଜଇ ରହି ସ୍ୱର୍ଗଥାନେ ।
ପାପ ଶୂନ୍ୟ ଦେହ ତା'ର ଜନମେ ଜନମେ
ହରର ଚନ୍ଦ୍ରାରେ ଥାଇ ସେ ପ୍ରାଣୀ ନକ୍ରମେ ।
ତା ସଦନେ ପୁରିଥାଏ ସକଳ ପଦାର୍ଥ
ଭୋଜନ ପାନରେ ମହାସୁଖୀ ହୁଏ ନିତ୍ୟ ।
ପରକାଳେ ସେହିପରି ପୃଥ୍ୱୀରେ ରହି
ଅମୃତ ଭୋଜନ କଲେ ତୃପତ ଲଭଇ ।

ଏସବୁ ଶୁଣିବା ପରେ ଗ୍ରାମବାସୀଙ୍କର ଚେତା ପଶିଲା । ସମସ୍ତେ ମିଳିମିଶି ବୃକ୍ଷରୋପଣ କରିବାରେ ଲାଗିଗଲେ ଓ ଗ୍ରାମ ଚାରିପଟେ ନୂଆ ଜଙ୍ଗଲ ସୃଷ୍ଟି କରିଲେ । ଏହା ଫଳରେ ସେମାନେ ଖାଦ୍ୟ, ବାସଗୃହ ଉପକରଣ ଓ ଜାଳେଣିକାଠ ପାଇ ସୁଖରେ ରହିଲେ ।

ଏହି ପ୍ରକାର ଗ୍ରାମବାସୀମାନଙ୍କଦ୍ୱାରା ଓ ଗ୍ରାମବାସୀମାନଙ୍କ ନିମିତ୍ତ ଜଙ୍ଗଲ ସୃଷ୍ଟି ଓ ସଂରକ୍ଷଣକୁ ଗ୍ରାମ୍ୟ ବନୀକରଣ କୁହାଯାଏ । ଗ୍ରାମ୍ୟ ବା ସାମାଜିକ ବନୀକରଣ ସାଧାରଣ ବନୀକରଣଠାରୁ ଅଲଗା । ଆମେ ବନୀକରଣ କହିଲେ ଜଙ୍ଗଲ ପରିଚାଳନା ବା ତତ୍ତ୍ୱାବଧାନ ବୋଲି ବୁଝୁ । ଏହି ପ୍ରକାର ବନୀକରଣଦ୍ୱାରା କେହି ସିଧାସଳଖ ଉପକୃତ ହୁଅନ୍ତି ନାହିଁ । ଏହାକୁ ଜାତୀୟ ସମ୍ପତ୍ତି ଭାବେ ନିଆଯାଏ ଓ ସମାଜ ବା ଗ୍ରାମର ଆବଶ୍ୟକତାଠାରୁ ଏହା ଅନେକ ଦୂରରେ । ଗ୍ରାମ୍ୟ ବା ସାମାଜିକ ବନୀକରଣ ଗାଁର ବା ସମାଜର ଆବଶ୍ୟକତା ଅନୁସାରେ ହୋଇଥାଏ ଓ ଗ୍ରାମବାସୀମାନେ ଏହାଦ୍ୱାରା ସିଧାସଳଖ ଉପକୃତ ହୋଇଥାଆନ୍ତି । ଯେହେତୁ ଭାରତର ଶତକଡ଼ା ୭୨ ଭାଗ ଲୋକ ଗ୍ରାମାଞ୍ଚଳରେ ବାସକରନ୍ତି, ଗ୍ରାମ୍ୟ ବନୀକରଣଦ୍ୱାରା ଏହି ଗ୍ରାମାଞ୍ଚଳ ଲୋକମାନଙ୍କର ମାନ ଉନ୍ନତ କରାଯାଇପାରିବ ।

ଉଦାହରଣ ସ୍ୱରୂପ—ଗ୍ରାମାଞ୍ଚଳରେ ଗାଈ ହେଉଛି ମରୁଭୂମିର ଓଟ ସଦୃଶ । ଏହା କୃଷୀମାନଙ୍କ ପାଇଁ ଅତ୍ୟନ୍ତ ମୂଲ୍ୟବାନ୍ । ବଳଦ ହଳକରିବା, ଢଠାଜଳସେଚନରେ ସାହାଯ୍ୟ କରିବା, ଅଖୁ ପେଡ଼ିବା ଇତ୍ୟାଦି କାର୍ଯ୍ୟରେ ସାହାଯ୍ୟ କରିଥାନ୍ତି । ଗାଈଗୋବର କୃଷିରେ ମୁଖ୍ୟ ଜୈବିକ ସାରରୂପେ ବ୍ୟବହୃତ ହୁଏ । କିନ୍ତୁ ଏହା ଗ୍ରାମାଞ୍ଚଳରେ ବହୁଳଭାବେ ଜାଳେଣୀ ଭାବେ ବ୍ୟବହୃତ ହୁଏ । ହିସାବରୁ ଜଣାଯାଏ ଯେ ଶତକଡ଼ା ୬୦ ଭାଗ ଗୋବର ଜାଳେଣୀ ଭାବେ ବ୍ୟବହୃତ ହୁଏ ଏବଂ ବାକି ୪୦ ଭାଗ କୃଷିକାମରେ ଲାଗେ । ଏଥିଯୋଗୁ ଖାଦ୍ୟ ଉତ୍ପାଦନରେ ବାଧାପ୍ରାପ୍ତ ହୁଏ । ଆମ ଦେଶରେ ହେକ୍ଟର ପିଛା ୧.୭ ଟନ୍ ଧାନ ଉତ୍ପାଦନ ହେଉଥିବା ସ୍ଥଳେ ଜାପାନ, ଥାଇଲଣ୍ଡ, ତାଇୱାନ ଭଳି ଦେଶରେ ୫ରୁ ୮ ଟନ୍ ଧାନ ଉତ୍ପାଦନ ହୁଏ । କାରଣ ଆମ ଦେଶର ଅଧିକାଂଶ କୃଷୀ ଗରିବ ସୀମାରେଖା ତଳେ ଥାଆନ୍ତି । ଏମାନଙ୍କର କୃଷୋପଯୋଗୀ ଉପକରଣ କିଣିବା ପାଇଁ ଧନ ନାହିଁ ବା ଜଙ୍ଗଲରୁ

କାଠ ପାଇପାରନ୍ତି ନାହିଁ, ରାନ୍ଧିବା ପାଇଁ ଜାଳେଣି ନାହିଁ । ଫଳରେ ୭୦ ଭାଗ ଗୋବର
ରାନ୍ଧିବା ପାଇଁ ଯାଏ । ଯଦି ୧୦୦ ଭାଗ ଗୋବର ଖତ କରାଯାଏ ତେବେ ଉତ୍ପାଦନ ନିଶ୍ଚିତ
ଭାବେ ଅଧିକା ହୋଇପାରିବ । ଗ୍ରାମ୍ୟ ବନୀକରଣଦ୍ୱାରା ଜାଳିବା ପାଇଁ ଓ ଘର ଉପକରଣ
ତିଆରି କରିବା ପାଇଁ କାଠ ମିଳିଥାଏ ଓ ପୁଣି ଗୋବରକୁ ସାର ଭାବରେ ବ୍ୟବହାର
କରିବା ସମ୍ଭବ ହୋଇଥାଏ ।

ଗ୍ରାମାଞ୍ଚଳରେ ବହୁଳ ସଂଖ୍ୟାରେ ଗ୍ରାମବାସୀମାନେ ପଶୁପାଳନ କରିଥାଆନ୍ତି । ଏହା-
ଦ୍ୱାରା ସେମାନେ ଦୁଧ, ମାଂସ ଓ ଅଣ୍ଡା ପାଇଥାନ୍ତି ଏବଂ ଏହା ତାଙ୍କ ଜୀବିକା ନିର୍ବାହର
ଅନ୍ୟ ଏକ ପନ୍ଥା । ଭାରତରେ ଯଦିଓ ପଶୁପାଳନ ବହୁଳଭାବେ ଦେଖାଯାଏ, ସେମାନେ
ସେହି ପରିମାଣରେ ଉତ୍ପାଦନକ୍ଷମ ନୁହନ୍ତି, ବିଶେଷତଃ ଗ୍ରାମାଞ୍ଚଳ ପଶୁମାନେ । ଏହା ପୁଷ୍ଟି-
ହୀନତା ଯୋଗୁ ହୋଇଥାଏ । ଜଙ୍ଗଲ ଧ୍ୱଂସହେବା ଯୋଗୁ ଏମାନେ ଠିକ୍ ଭାବେ ଖାଦ୍ୟ
ପାଆନ୍ତି ନାହିଁ । ଗ୍ରାମବାସୀମାନଙ୍କର ଗୋରୁଗାଈଙ୍କୁ ସୁଷମ ଖାଦ୍ୟ ଦେବାର ସୁବିଧା ଓ
କ୍ଷମତା ନଥାଏ । ଗ୍ରାମାଞ୍ଚଳରେ ଗ୍ରାମବାସୀମାନଙ୍କର ମିଳିତ ଉଦ୍ୟମରେ ଚାରଣ ଜମି କରିବା
ମଧ୍ୟ ଗ୍ରାମ୍ୟ ବନୀକରଣର ଅନ୍ୟ ଏକ ଲକ୍ଷ୍ୟହେବା ଉଚିତ୍ ।

ଏହି ପ୍ରକାର ବନୀକରଣ ଫଳରେ ପାଖ ଅଂଚଳରେ ଥିବା ପ୍ରାକୃତିକ ସଂରକ୍ଷିତ ଜଙ୍ଗଲ
ଉପରେ ଆଉ ଚାପ ପଡ଼େନାହିଁ । ଅତଏବ ବୁଝାଯାଉଛି ଯେ ଗ୍ରାମାଞ୍ଚଳରେ ବନୀକରଣ
ଗ୍ରାମବାସୀମାନଙ୍କ ଚାହିଦା ଅନୁସାରେ ହେବା ଉଚିତ । ଅର୍ଥାତ ଯେଉଁ ଗ୍ରାମରେ
ଲୋକମାନଙ୍କ ଜାଳେଣୀ କାଠ ନିହାତି ଦରକାର ସେଠାରେ ସେହିପ୍ରକାର ଶୀଘ୍ର ବଢ଼ୁଥିବା
ଗଛ ଲଗାଇବା ଉଚିତ୍ । ଯେଉଁଠାରେ ମାଟି ସଂରକ୍ଷଣ କରାଯିବା ଆବଶ୍ୟକ ସେଠାରେ
ମାଟିର ପ୍ରକୃତିକୁ ନେଇ ବନୀକରଣ ହେବା ଦରକାର । କିନ୍ତୁ ମିଶ୍ର ବନୀକରଣ ଫଳରେ
ଲୋକମାନେ ସବୁପ୍ରକାର ସୁବିଧା ପାଇଥାଆନ୍ତି । ମାଡ୍ରାଜ ବିଶ୍ୱବିଦ୍ୟାଳୟର କେତେକ
ସ୍ୱେଚ୍ଛାସେବୀ କୋଡ଼ିଏ ଗାଁକୁ ଯାଇ ତାଙ୍କର କି ପ୍ରକାର ବନୀକରଣ ଇଚ୍ଛା ପ୍ରଶ୍ନ କରିବାରେ
ପୁରୁଷମାନେ କହିଲେ ଯେ ତାଙ୍କର ଫଳ ଗଛ ଯଥା—ଆମ୍ବ, ଜାମୁ, ପିଜୁଳି ଇତ୍ୟାଦି
ଦରକାର । କିନ୍ତୁ ମହିଳାମାନେ କହିଥିଲେ ଯେ ସେମାନଙ୍କର ଜାଳେଣୀକାଠ ପାଇଁ ଗଛ
ଦରକାର । ମହିଳାମାନେ କହିଲେ ଯେ ସେମାନଙ୍କର ଦାୟିତ୍ୱ ହେଉଛି କିଲୋମିଟର
କିଲୋମିଟର ଯାଇ କାଠ ସଂଗ୍ରହ କରିବା । ଏହାଦ୍ୱାରା ତାଙ୍କର ପୁରାଦିନ ନଷ୍ଟ ହେଉଛି ।
ଫଳଗଛ ହେଲେ ପୁରୁଷମାନେ ସେଗୁଡ଼ିକ ବିକି ମଦ ଖାଇ ଫେରନ୍ତି । ଶେଷରେ ସବୁ କଷ୍ଟ
ତାଙ୍କୁ ଭୋଗିବାକୁ ପଡ଼େ । ତେଣୁ ଗ୍ରାମ୍ୟ ବନୀକରଣ ଯୋଜନାବେଳେ ଏ ସବୁ ଦିଗ
ବିଚାରକୁ ନେବା ବିଧେୟ ।

ଏ ପର୍ଯ୍ୟନ୍ତ ଭାରତବର୍ଷରେ ଯେତେ ସାମାଜିକ ବନୀକରଣ ହୋଇଛି ସେ ଭିତରୁ
ଇଉକାଲିପଟାସ୍ ବୃକ୍ଷରୋପଣ କେବଳ ଶତକଡ଼ା ୮୦/୯୦ ଭାଗ । ଏହି ବୃକ୍ଷରୋପଣ
ବିଷୟରେ ଆଲୋଚନାଚକ୍ର, ସଭାସମିତି ତଥା ସମ୍ବାଦପତ୍ର ମାଧ୍ୟମରେ ବହୁ ବାଦ-
ବିବାଦ ଓ ଯୁକ୍ତିତର୍କ ଚାଲିଛି । ପରିବେଶ ବୈଜ୍ଞାନିକମାନେ କୁହନ୍ତି ଯେ ଏହା ବହୁଭାବେ

ଯଥାକାରକ ଓ ଏହାର ଉପକାର ତୁଳନାରେ ଅପକାର ଅନେକ । ଏହି ଗଛ ଅମ୍ଳୀୟ, ତେଣୁ ମାଟିର ଅମ୍ଳ ଅଂଶ ବଢ଼ାଏ । ମାଟି ନଷ୍ଟ କରାଏ । ଅନ୍ୟ ଗଛମାନେ ଏହା ପାଖରେ ବଢ଼ିପାରନ୍ତି ନାହିଁ । ଏହାର ପତ୍ର ପଶୁମାନେ ଖାଆନ୍ତି ନାହିଁ । ଅନ୍ୟ କାଠ ୧ କେ.ଜି. ଜାଳେଣି ପାଇଁ ବ୍ୟବହୃତ ହେଲେ ଇଉକାଲିପଟାସ୍ କାଠ ୫ କେ.ଜି ବ୍ୟବହୃତ ହୁଏ, କାରଣ ଏହା ଖୁବ୍ ଶୀଘ୍ର ଜଳିଯାଏ । ଏହା ବଢ଼ିବା ପାଇଁ ବହୁ ଜଳ ଆବଶ୍ୟକ ହୁଏ ଓ ଏହା ମାଟିର ଜଳସ୍ତମ୍ଭ କମାଇଦିଏ । ସମାଜବାଦୀମାନେ କୁହନ୍ତି ଯେ ଯଦିବା ଏହି ସାମାଜିକ ବନୀକରଣ କାର୍ଯ୍ୟକ୍ରମ କେବଳ ସମାଜର ସ୍ୱଚ୍ଛତା ମେଣ୍ଟାଇବା ପାଇଁ ଉଦ୍ଦିଷ୍ଟ । ଇଉକାଲିପଟାସ୍ ବନୀକରଣ ଫଳରେ କେବଳ ଧନୀଶ୍ରେଣୀସ୍ଥ ଲୋକ ଓ କଳକାରଖାନା ଉପକୃତ ହୋଇଥାନ୍ତି । ତେଣୁ ଏହି ବୃକ୍ଷ ଗ୍ରାମ୍ୟ ବନୀକରଣ ନିମିତ୍ତ ଏକ ଶ୍ରେଷ୍ଠ ବୃକ୍ଷ ନୁହେଁ । ଅନ୍ୟ ଜାତିର ଗଛ ଯଥା—ବାବୁଲ, ସୁବାବୁଲ୍, ଅକାସିଆ ପ୍ରଭୃତି ଗଛ ଜମିକୁ ଖାଦ୍ୟ ଯୋଗାନ୍ତି, ଶୀଘ୍ର ବଢ଼ିପାରନ୍ତି ଏହାର ପତ୍ର ପଶୁଖାଦ୍ୟ ରୂପେ ବ୍ୟବହୃତ ହୋଇପାରେ ଏବଂ ଏହାର କାଠ ଜାଳେଣି ପାଇଁ ଇଉକାଲିପଟାସ୍‌ଠାରୁ ଭଲ । ଏହି ସବୁ ଗଛ ଅପେକ୍ଷା ଇଉକାଲିପଟାସର ସୁବିଧା ହେଲା ଏହାର ବେଶୀ ଯତ୍ନ ନେବାକୁ ପଡ଼େନାହିଁ । କିନ୍ତୁ ଏହି ଟିକିଏ ସୁବିଧାକୁ ଜଳାଞ୍ଜଳି ଦେଲେ ଗ୍ରାମ୍ୟ ବନୀକରଣ ଯୋଜନା ଫଳପ୍ରଦ ହୋଇ ପାରିବ ।

ଅତଏବ ବୁଝାଯାଉଛି ଯେ ଗ୍ରାମ୍ୟବନୀକରଣ ହେଉଛି ଗ୍ରାମବାସୀଙ୍କଦ୍ୱାରା ଓ ଗ୍ରାମବାସୀଙ୍କ ନିମିତ୍ତ ଜଙ୍ଗଲ ସୃଷ୍ଟି ଓ ଜଙ୍ଗଲ ସଂରକ୍ଷଣ । ଭାରତର ଅଧିକାଂଶ ଲୋକ ଗରିବ । ଗ୍ରାମମାନଙ୍କରେ ଶତକଡ଼ା ୧୦ ଭାଗ ଲୋକଙ୍କର ପ୍ରଚୁର ଜମିଥିବା ସ୍ଥଳେ ଅନ୍ୟ ୯୦ ଭାଗ ଲୋକ ମୂଲ ଲାଗି ପେଟ ପୋଷନ୍ତି । ସେମାନେ ଗ୍ରାମ୍ୟବନୀକରଣରେ ଯୋଗଦେଇ ପାରିବେ କି ? ଯେଉଁ ୧୦ ଭାଗ ଧନୀଶ୍ରେଣୀସ୍ଥ ଲୋକ ଅଛନ୍ତି ସେମାନେ ବନୀକରଣ ପାଇଁ ଉତ୍ସାହ ନଦେବା ସ୍ୱାଭାବିକ । ତେଣୁ ସରକାରଙ୍କ ସାହାଯ୍ୟ ବିନା ଗ୍ରାମ୍ୟ ବନୀକରଣ ଅସମ୍ଭବ । ସରକାର ପ୍ରତି ଗ୍ରାମକୁ ଦ୍ୱନ୍ଦ୍ୱ ଅନୁସାରେ ପଡ଼ିଆ ଜମି ବନୀକରଣ ନିମନ୍ତେ ଯୋଗାଇଲେ ଏହା ଫଳପ୍ରଦ ହୋଇପାରିବ । ଗ୍ରାମ୍ୟ ବନୀକରଣକୁ ଫଳପ୍ରଦ କରିବାକୁ ହେଲେ ନିମ୍ନଲିଖିତ କେତୋଟି ମତାମତକୁ ବିଚାର କରିବା ଆବଶ୍ୟକ—

୧ । ଗ୍ରାମର ଦ୍ୱନ୍ଦ୍ୱ ଅନୁସାରେ ସରକାର ପଡ଼ିଆ ଜମି ଗ୍ରାମବାସୀଙ୍କୁ ଲିଜ୍ ହିସାବରେ ଦେବା ଦରକାର ।

୨ । ଗରିବ, କ୍ଷୁଦ୍ର ଓ ନାମ ମାତ୍ର ଚାଷୀଙ୍କୁ ନିଜିସ୍ୱ, ଅନାବାଦୀ ପଡ଼ିଆ ଓ ବନ୍ଧମୁଣ୍ଡାରେ ଗଛ ଲଗାଇବା ପାଇଁ ବିନା ମୂଲ୍ୟରେ ଚାରା ଯୋଗାଇ ଦେବା ଉଚିତ ।

୩ । ପ୍ରତି ଗଛପାଇଁ ଟ ୧ରୁ ଟ ୫ ଙ୍କା ପର୍ଯ୍ୟନ୍ତ ପୁରସ୍କାର ଦେଇ ସରକାର ଲୋକ ଉତ୍ସାହ ସୃଷ୍ଟି କରିବା ଆବଶ୍ୟକ ।

୪। ସରକାରଙ୍କ ମୃତ୍ତିକା ପରୀକ୍ଷଣ ବିଭାଗ ତରଫରୁ ମାଟି ପରୀକ୍ଷା କରି ସେହି ମାଟିରେ ବଢ଼ିବା ଭଳି ଗଛ ସବୁ ପ୍ରତି ପଞ୍ଚାୟତରେ ନର୍ସରୀ କରି ଉତ୍ତୋଳିବା ଦରକାର ।

୫। କୌଣସି ପ୍ରାକୃତିକ ଜଙ୍ଗଲ ବା ଚାଷ ଜମି ଏହି ବନୀକରଣ ଯୋଜନାରେ ଅନ୍ତର୍ଭୁକ୍ତ ହେବା ଅନୁଚିତ୍ ।

୬। ଗ୍ରାମମାନଙ୍କରେ ସଭା ସମିତି କରି ଗ୍ରାମ୍ୟ ବନୀକରଣର ଯଥାର୍ଥତା ଓ ତା'ର ଉପକାରିତା ବିଷୟରେ ଲୋକଙ୍କୁ ହୃଦୟଙ୍ଗମ କରାଇବା ଉଚିତ ।

୭। ପୁରାଣ ଓ ଭାଗବତ ମାଧ୍ୟମରେ ଗଛ ଲଗାଇବାର ସୁଫଳ ଓ ଗଛ କାଟିବାର କୁଫଳ ବିଷୟରେ ଗ୍ରାମବାସୀଙ୍କୁ ଅବଗତ କରାଇବା ଆବଶ୍ୟକ ।

୮। ଗ୍ରାମର ବେକାର ଯୁବକମାନଙ୍କୁ ଜଙ୍ଗଲ ସଂରକ୍ଷଣ ଦାୟିତ୍ୱ ଦେଇ ସେମାନଙ୍କୁ ରୋଜଗାରକ୍ଷମ କରାଯିବା ଉଚିତ୍ ।

୯। ପରିଶେଷରେ ଗ୍ରାମ୍ୟ ବନୀକରଣର ସୁଫଳ କେବଳ ସେହି ଗ୍ରାମବାସୀମାନଙ୍କ ମଧ୍ୟରେ ସୀମିତ ରହିବା ଦରକାର ।

---

# ପଶୁପାଳନ

[ ଆଜିକାଲି ସହରରେ ଲୋକେ ଗାଈ ଓ ଛେଳି ପାଳିଲେଣି, କିନ୍ତୁ ଏଥିପାଇଁ ଜନସ୍ୱାସ୍ଥ୍ୟ କ୍ଷତି ହେଉଛି ପ୍ରକୃତରେ କି ।]

ପଶୁପାଳନ ସହିତ ଭାରତୀୟ ସାମାଜିକ ଜୀବନର ସମ୍ପର୍କ ବହୁ ପୁରାତନ କାଳରୁ ରହିଆସିଅଛି । ଯେଉଁଦିନୁ ମନୁଷ୍ୟ ପ୍ରଥମେ ପଶୁପାଳନକଳା ଶିଖିଲା ଓ ପଶୁଠାରୁ ତା'ର ନିଜର ଖାଦ୍ୟ ବସ୍ତ୍ର ଇତ୍ୟାଦି ଆମଦାନିର ନୂଆ ରାସ୍ତା ପାଇଲା, ସେହିଦିନଠାରୁ ପଶୁ-ପାଳନର କ୍ରମବିକାଶ ହୋଇ ତାହା ଆଧୁନିକ ଅବସ୍ଥାରେ ପହଞ୍ଚିଛି । ବର୍ତ୍ତମାନ ଆମେ ନିଜେ ଉପଲବ୍ଧି କଲୁଣି ବିଶ୍ୱରେ ଯେଉଁ ଦେଶ ପଶୁପାଳନରେ ଆଗୁଆ ସେ ସବୁ ଧନରେ ଶୀର୍ଷ ସ୍ଥାନରେ ପହଞ୍ଚିଛନ୍ତି । ଆମ ଭାରତରେ ମଧ୍ୟ ଯେଉଁ ପ୍ରଦେଶ ବା ରାଜ୍ୟର ପଶୁସମ୍ପଦର ସମୃଦ୍ଧି ଘଟିଛି ସେ ରାଜ୍ୟ ଦେଶରେ ଅଗ୍ରଣୀ ହୋଇଛି । ଆଜି ଏହାର ନମୁନା ପଞ୍ଜାବ, ହରିଆନା, ଗୁଜରାଟ, ଆନ୍ଧ୍ରପ୍ରଦେଶ ଓ କର୍ଣ୍ଣାଟକ ।

ଆମ ଭାରତବର୍ଷ ଗୋଟିଏ କୃଷିପ୍ରଧାନ ଦେଶ । କୃଷି ଓ କୃଷିକର୍ମ ଲାଗି ବଳଦର ଶ୍ରମ ଦରକାର କରେ । ହଳ, ମାଲବୁହା ଆଦି ସବୁ ପାଇଁ ବଳଦ ଦରକାର । ଘଡ଼ି ଯୋଚର ବଳଦର ଅଭାବରେ କୃଷି ଅଚଳ । ଯାନ୍ତ୍ରିକ କୃଷିର ପ୍ରଚଳନ ଖୁବ୍ ସୀମିତ । କାରଣ କୋଠକୃଷିର ପ୍ରଚଳନ ଆମ ଦେଶରେ ପ୍ରାୟ ନାହିଁ କହିଲେ ଚଳେ । ତେଣୁ ଗୋପାଳନ ଭାରତୀୟ କୃଷିର ପ୍ରଧାନ ମୂଳପିଣ୍ଡ । ପଶୁଧନର ସ୍ଥାନ ଅଧିକ ହେବାର ଆଉ ଏକ କାରଣ ହେଉଛି ପ୍ରାୟ ଅର୍ଦ୍ଧାଧିକ ଲୋକ ଆମ ଦେଶରେ ନିରାମିଷାଶୀ ଏବଂ ଦୁଗ୍ଧ ଓ ଦୁଗ୍ଧଜାତ ଦ୍ରବ୍ୟ କେବଳ ତାଙ୍କର ଜୈବିକ ପ୍ରୋଟିନ୍‌ର ସ୍ଥାନ ଅଧିକାର କରିଛି । ଆମିଷାଶୀଙ୍କଠାରୁ ତାଙ୍କୁ ଅଧିକ ହାରରେ ଦୁଗ୍ଧ ବ୍ୟବହାର କରିବାକୁ ପଡ଼ିଥାଏ । ପରିସଂଖ୍ୟାନରୁ ଜଣାପଡ଼ୁଛି ଜଣକୁ କେବଳ ୧୫୦ ଗ୍ରାମ ଦୁଗ୍ଧ ଆମ ଦେଶରେ ମିଳିଥାଏ ।

ପୁରାଣ ଅନୁସାରେ ଜଣେ ବ୍ୟକ୍ତି ଅନ୍ୟାନ୍ୟ ଜୈବିକ ପ୍ରୋଟିନ୍ ସହିତ ୨୮୩ ଗ୍ରାମ କ୍ଷୀର ଖାଇବା ଦରକାର । ଏହିପରି ବଳଦ କୃଷି କାର୍ଯ୍ୟପାଇଁ ଓ ଗାଈ ଅଧିକ ଦୁଗ୍ଧ ଉତ୍ପାଦନ ପାଇଁ ଗୋପାଳନର ଗୁରୁତା ବଢ଼ାଇ ଦେଇଛି । ଦେଶର ଗୁରୁତା ଅନୁସାରେ ରାସାୟନିକ ସାରର ବହୁଳ ବ୍ୟବହାରକୁ ନିରୁତ୍ସାହିତ କରିବା ପରେ ମଧ୍ୟ ଗୋମୂତ୍ର ଓ ଗୋବର ଭୂମି ଉର୍ବରତାକୁ ରକ୍ଷା କରିବାରେ ଅତି ଦରକାରୀ ହୋଇପଡ଼ୁଛି ।

ପୃଥିବୀର ସବୁ ସ୍ଥାନରେ ଗୋବର ଖତକୁ ରାସାୟନିକ ସାର ଅପେକ୍ଷା ଅଧିକ କହିଥିବାର କାରଣ ହେଉଛି ଗୋବର ମାଟିର ପୁନଃ ବ୍ୟବହାର ଓ ଉର୍ବରତାକୁ

ରହାତରେ । ବର୍ତ୍ତମାନ ବାର୍ଷିକ ୧୨୦୦ ନିୟୁତ ଟନ୍ ଗୋବର ଖତ ଆମ ଦେଶରେ ଉତ୍ପନ୍ନ ହେଉଛି । ଏହା ହେକ୍ଟର ପିଛୁ ୭ ଟନ୍ ପଡ଼ିବ । ଯଦି ଏହି ପରିମାଣ ଖତକୁ ସଂରକ୍ଷିତ କରି ବ୍ୟବହାର କରାଯାଏ ଦେଶପକ୍ଷେ ବହୁତ ହିତକର ହେବ । ଏହି ମୂଲ୍ୟବାନ ପଦାର୍ଥ ଆମ ଦେଶରେ ଜାଳେଣୀ ହିସାବରେ ବହୁଳ ବ୍ୟବହାର କରାଯାଉଅଛି । ହିସାବ କରି ଦେଖାଯାଇଛି ଯେ ଏଭଳି ଭାବରେ ଜାଳେଣୀ ବ୍ୟବହାର ଯୋଗୁଁ ଭଲ ଉତ୍ପାଦନକ୍ଷମତା ବିଶିଷ୍ଟ ୧୨ଟି କାରଖାନାର ସାର ଆମେ ପୋଡ଼ି ନଷ୍ଟ କରି ଦେଉଅଛୁ । ମୃତ ଗୋମେଷାଦି ପଶୁଙ୍କର ସବୁ ପଦାର୍ଥ ଆମ ବ୍ୟବହାରରେ ମଧ୍ୟ ଆସିଥାଏ ।

ପଶୁ ସୁମାରିରୁ ଜଣାଯାଏ, ଭାରତର ପଶୁସମ୍ପଦ ୨୨୮.୩୮ ନିୟୁତ । ଗୋରୁ ଗାଈ ଓ ମଇଁଷି ଇତ୍ୟାଦି ୫୨.୮୭ ନିୟୁତ ପଶୁ ଆମ ଦେଶରେ ଅଛନ୍ତି । ପୃଥିବୀର ୧/୫ ସଂଖ୍ୟା ଗୋସମ୍ପଦ ଆମ ଦେଶରେ ଅଛି । ୧୯୩୨ ମସିହାରେ ପଶୁପାଳନରୁ ଆୟ ୩୦୦୦ କୋଟି ଟଙ୍କା ହୋଇଥିବା ସ୍ଥଳେ ଖେଁବାବଦରୁ ୭୫୦ କୋଟି ଟଙ୍କା ହୋଇଥିଲା । ବର୍ତ୍ତମାନ ପଶୁ ସମ୍ପଦରୁ ଆୟ ଅତ୍ୟନ୍ତ ଅଧିକ ବୃଦ୍ଧି ପାଉଅଛି ।

ଗୋପାଳନ ନିମିତ୍ତ ପାରିପାର୍ଶ୍ୱିକ ଅବସ୍ଥା ଅଧିକାଂଶରେ ଦାୟୀ । ବର୍ଷା, ତାପମାତ୍ରା, ଆର୍ଦ୍ରତା ଇତ୍ୟାଦି ଏମାନଙ୍କ ମଧ୍ୟରୁ ଅନ୍ୟତମ । ଶୁଷ୍କ ଅଞ୍ଚଳରେ ବାସ କରୁଥିବା ଗାଈ ଗୋରୁ ଅଧିକ ଉତ୍ପାଦନକ୍ଷମ ଅଟନ୍ତି । ପଞ୍ଜାବ, ହରିଆନା, ରାଜସ୍ଥାନ, ଗୁଜରାଟ, ମହାରାଷ୍ଟ୍ର, କର୍ଣ୍ଣାଟକ, ତାମିଲନାଡ଼ୁ ଓ ଆନ୍ଧ୍ରପ୍ରଦେଶ ଗୋପାଳନ କ୍ଷେତ୍ରରେ ଅଗ୍ରଗାମୀ । ଆସାମ, ବିହାର, ଓଡ଼ିଶା, ପଶ୍ଚିମବଙ୍ଗର ଜଳବାୟୁ ଗୋପାଳନ ପାଇଁ ବିଶେଷ ଉପଯୋଗୀ ନୁହେଁ ।

ଜର୍ସି, ହୋଲଷ୍ଟେନ୍, ରେଡଡେନ୍ ଇତ୍ୟାଦି ଅଧିକ ଉତ୍ପାଦନକ୍ଷମ ଗାଈ ବିଦେଶରୁ ଭାରତକୁ ଆମଦାନୀ ହେଉଅଛନ୍ତି, ଉତ୍ତମ ପଶୁପାଳନ ନିମିତ୍ତ ଖାଦ୍ୟ, ଲାଳନପାଳନ, ପ୍ରଜନନ ଓ ରୋଗ ନିରୋଧ ବିଦ୍ୟାର ଦରକାର ।

**ମେଷ ପାଳନ—**

ଆମ ଦେଶରେ ଗରିବ ଲୋକମାନେ ଗାଁ ଗହଳରେ ମେଷ, ଛାଗ ପାଳନକରି ଜୀବିକା ନିର୍ବାହ ମଧ୍ୟ କରିଥାଆନ୍ତି । ପତିତ ଜମିରୁ ଅନାବନା ଘାସ ବିଶେଷତଃ ପଶୁମାନେ ବ୍ୟବହାର କରିଥାଅନ୍ତି । ଦୁଗ୍ଧ ବ୍ୟତୀତ ମାଂସ, ଚର୍ମ, ଶିଙ୍ଗ, ଲୋମ ଆମ୍ଭମାନଙ୍କର ବ୍ୟବହାରରେ ଲାଗିଥାଏ । ଭାରତର ମେଣ୍ଢାଲୋମ ପଶମ ନିମିତ୍ତ ପ୍ରସିଦ୍ଧ । ରାଜସ୍ଥାନ, କଚ୍ଛ, ପଞ୍ଜାବ, ସୌରାଷ୍ଟ୍ରରେ ଉନ୍ନତ ଧରଣର ମେଣ୍ଢା ପାଳନ କରାଯାଇଥାଏ । କିନ୍ତୁ ଦକ୍ଷିଣ ଭାରତରେ ପାଳନ କରାଯାଉଥିବା ମେଣ୍ଢା ମାଂସ ନିମିତ୍ତ ଅଧିକ ଉପଯୋଗୀ । ପୃଥିବୀରେ ପାଳନ କରାଯାଉଥିବା ମେଣ୍ଢାମାନଙ୍କର ଏକ ଷଷ୍ଠାଂଶ ଭାରତରେ ଅଛନ୍ତି, ବାର୍ଷିକ ହାରାହାରି ୩୫ ନିୟୁତ କିଲୋଗ୍ରାମ ପଶମ ଭାରତରେ ଉତ୍ପାଦନ କରାଯାଏ ଏବଂ ପଶମ ଉତ୍ପାଦନରୁ ୧୫ କୋଟିଟଙ୍କା ଆମଦାନୀ ହୋଇଥାଏ । ଏହା ବ୍ୟତୀତ ୨୯ କୋଟି ଟଙ୍କାର

କମ୍ବଳ, ଭଳି ଇତ୍ୟାଦି ମଧ୍ୟ ଲବ୍ଧ ହୋଇଥାଏ । ମେଷ ଚମଡ଼ାରୁ ବାର୍ଷିକ ୧୧ କୋଟି ଟଙ୍କା ଏବଂ ମାଂସ ବାବଦରୁ ବାର୍ଷିକ ୩୦ କୋଟି ଟଙ୍କା ମଧ୍ୟ ମିଳିଥାଏ ।

ଭୂପୃଷ୍ଠରୁ ୧୩୦୦ ମିଟର ଉଚ୍ଚତା ପର୍ଯ୍ୟନ୍ତ ଘନ ପଶମଯୁକ୍ତ ମେଣ୍ଢା ପାଳନ ଦୃଷ୍ଟି-ଗୋଚର ହୋଇଥାଏ । ଶୁଷ୍କିଳ ଅଞ୍ଚଳ ଯଥା:—ମାଲପୁର, ବିକାନିର, ଜୟସାଲମେର ଅଞ୍ଚଳରେ ଉନ୍ନତ ଜାତିର ମେଣ୍ଢା ପାଳନ କରାଯାଏ ।

ଛେଳିକୁ ଆମେ ଗରିବ ଲୋକର ଗାଈ କହୁଥାଉ କେବଳ ନାମ ନୁହେଁ କାର୍ଯ୍ୟରେ ମଧ୍ୟ ଏହା ଦେଖାଯାଏ । ଅତି ଅଳ୍ପ ଖର୍ଚ୍ଚରେ ଛାଗ ପାଳନ କରାଯାଏ ।

ପାଶ୍ଚାତ୍ୟ ଦେଶରେ ଛେଳିକୁ ଶୀଘ୍ର ଦାଈ ମାଈ କୁହାଯାଏ, ଛେଳିର ଦୁଧ ଶସ୍ତା । ସହଜରେ ହଜମ ହୁଏ ଏବଂ ଏହା ଉପଯୁକ୍ତ ଭାବରେ ପୁଷ୍ଟିକର । ବିଭିନ୍ନ ରୋଗ ବ୍ୟାଧି ଯଥା:—ଅଗ୍ନିମାନ୍ଦ୍ୟ, ପେଟରୋଗ, ଯକୃତ ବ୍ୟାଧି, କାମଳ ରୋଗ ଇତ୍ୟାଦି ବ୍ୟାଧିରେ ଛେଳି କ୍ଷୀର ବ୍ୟବହାର କରାଯାଇଥାଏ । ସମଗ୍ର ପୃଥିବୀର ଏକ-ଚତୁର୍ଥାଂଶ ଛେଳି ଭାରତରେ ଅଛନ୍ତି । କେତେକ ପାହାଡ଼ିଆ ଛେଳିର ଲୋମରୁ ପଶମ ମିଳିଥାଏ । ଏହା ବ୍ୟତୀତ ଛେଳି ମାଂସ, ଚମଡ଼ାରୁ ମଧ୍ୟ ଅର୍ଥ ମିଳିଥାଏ । ଗ୍ରାମାଞ୍ଚଳର ଆର୍ଥିକ ବିକାଶ ଛାଗ ପାଳନଦ୍ୱାରା କରାଯାଇପାରିବ । ଉତ୍ତର ଭାରତରେ ଯମୁନାପରୀ, ବାରବାରି ତଥା ଦକ୍ଷିଣ ଭାରତରେ ଡେକାନ ଓସମାନାବାଦୀ, ମାଲବାରି ଏବଂ ପୂର୍ବାଞ୍ଚଳରେ ବେଙ୍ଗଲ ଓ ଆସାମହିଲ୍ ଛାଗ ପାଳନ କରାଯାଇଥାଏ ।

ଇଉରୋପରେ ଟୋଗେନବର୍ଗ ଜାତୀୟ ଛେଳି ଦିନକୁ ହାରାହାରି ୫-୬ କେ.ଜି, ପର୍ଯ୍ୟନ୍ତ ଦୁଗ୍ଧ ଦେଇଥାଆନ୍ତି । ଗାଈ ଦୁଧ ତୁଳନାରେ ଛେଳି ଦୁଧ ବେଶୀ ଉପଯୋଗୀ କାରଣ ଏହାର ଚର୍ବି ଅଂଶ କମ୍ ଏବଂ ରୋଗ ପ୍ରତିରୋଧକ ଶକ୍ତି ଛେଳି କ୍ଷୀରରେ ବେଶୀ ପରିମାଣରେ ଅଛି । ମା' କ୍ଷୀରରେ ୫ଟି ଧାତବ ଲବଣ ଥିବା କ୍ଷେତ୍ରରେ ଗାଈ କ୍ଷୀରରେ ୬ଟି ଏବଂ ଛେଳି କ୍ଷୀରରେ ୯ଟି ଧାତବ ଲବଣ ମିଳିଥାଏ । ଛେଳିର ଝାଡ଼ା ମଧ୍ୟ ଉତ୍କୃଷ୍ଟ ସାରରୂପେ ବ୍ୟବହାର କରାଯାଏ ।

ବର୍ତ୍ତମାନ ସରକାର ବିଭିନ୍ନ କ୍ଷେତ୍ରରେ ଦାରିଦ୍ର୍ୟ ଦୂରୀକରଣ ଯୋଜନା ମାଧ୍ୟମରେ ଗରିବ ଲୋକମାନଙ୍କୁ ସାହାଯ୍ୟ କରୁଅଛନ୍ତି । ପଶୁପାଳନ ଜାତୀୟ ଅସ୍ଥ ବୃତ୍ତିରେ ଉପଯୁକ୍ତ ସାହାଯ୍ୟ କରିପାରିବ । ପଶୁପାଳନ ସଫଳ ରୂପାୟନ ନିମିତ୍ତ ସୁସ୍ଥ ବାତାବରଣ ସୃଷ୍ଟି କରାଗଲେ ଜନସାଧାରଣ ଉପକୃତ ହୋଇପାରିବେ ।

---

# ଗ୍ରାମାଞ୍ଚଳର ସ୍ୱାସ୍ଥ୍ୟ ଓ ଦେଶୀୟ ଚିକିତ୍ସା ପଦ୍ଧତି

[ ଗାଁ ଗହଳର ଜନସାଧାରଣଙ୍କ ପାଇଁରେ ସ୍ୱଦେଶୀୟ ଚିକିତ୍ସା ପଦ୍ଧତି କ'ଣ ? ଯାହା ସହଜ, ସରଳ, ସୁଲଭ, ଶସ୍ତା ଏବଂ କମ୍ ଖର୍ଚ୍ଚକାରକ ତାହା ତାଙ୍କ ଅନ୍ତର୍ଦ୍ଦେଶରେ ।]

ଆମର ଦେଶୀୟ ଚିକିତ୍ସାପଦ୍ଧତି ଅତି ପୂର୍ବକାଳରୁ ପ୍ରଚଳିତ ଏବଂ ଆମ ଦେଶର ସଂସ୍କୃତି ଉପରେ ଆଧାରିତ ପାରମ୍ପରିକ ଚିକିତ୍ସାପଦ୍ଧତି । ମୂଳତଃ ଊନବିଂଶ ଶତାବ୍ଦୀର ପ୍ରାରମ୍ଭ ସମୟରୁ ପୃଥିବୀର ଅଧିକାଂଶ ଦେଶରେ ପ୍ରଚଳିତ ଚିକିତ୍ସାପଦ୍ଧତିକୁ ଦେଶୀୟ ବା ପାରମ୍ପରିକ ଚିକିତ୍ସା ପଦ୍ଧତି ଆଖ୍ୟା ଦିଆଯାଉଛି । ଆଧୁନିକ ଚିକିତ୍ସା ବିଜ୍ଞାନର ଅଭ୍ୟୁତ୍ଥାନ ଫଳରେ, ବିଶେଷତଃ ବିଂଶ ଶତାବ୍ଦୀର ଶେଷଭାଗରେ ଏହା ଉପରେ ଆଧାରିତ ସ୍ୱାସ୍ଥ୍ୟସେବାର ବ୍ୟାପକଭାବରେ ପ୍ରସାର ଘଟିବା ଯୋଗୁ ବହୁ ଶତାବ୍ଦୀ ଧରି ପ୍ରଚଳିତ ପାରମ୍ପରିକ ଚିକିତ୍ସା-ପଦ୍ଧତି ପ୍ରତି ଆମେ ଅଧୁନା ବିମୁଖ । ତଥାପି ସମଗ୍ର ବିଶ୍ୱର ପ୍ରାୟ ଅର୍ଦ୍ଧେକ ଲୋକସଂଖ୍ୟା ଏସିଆ ଦେଶମାନଙ୍କରେ ବାସ କରନ୍ତି ଯେଉଁଠି ପାରମ୍ପରିକ ଚିକିତ୍ସାପଦ୍ଧତି ସରକାରୀଭାବେ ସ୍ୱୀକୃତ ଏବଂ ଏଥି ନିମନ୍ତେ ସରକାରୀ ବ୍ୟବସ୍ଥା ରହିଛି । ଅନେକ ଦେଶରେ ବିଶେଷତଃ ଉନ୍ନତକାମୀ ଦେଶଗୁଡ଼ିକରେ ସମସ୍ତ ଲୋକସଂଖ୍ୟାର ଶତକଡ଼ା ୮୦ ଭାଗରୁ ଅଧିକ ଗ୍ରାମାଞ୍ଚଳରେ ବାସକରନ୍ତି ଏବଂ ସେମାନଙ୍କ ସ୍ୱାସ୍ଥ୍ୟର ଯତ୍ନ ଏବଂ ରୋଗବ୍ୟାଧିର ଚିକିତ୍ସା ନିମନ୍ତେ ଆଧୁନିକ ଚିକିତ୍ସା ବିଜ୍ଞାନ ଉପରେ ଆଧାରିତ ସରକାରୀ ତଥା ବେସରକାରୀ ସ୍ୱାସ୍ଥ୍ୟ-ସେବା ଆବଶ୍ୟକତା ପୂରଣ କରିବାକୁ ଅକ୍ଷମ । ପୁନଶ୍ଚ ଆଧୁନିକ ଚିକିତ୍ସା ଓ ସ୍ୱାସ୍ଥ୍ୟସେବା ଅନେକ କ୍ଷେତ୍ରରେ ଗ୍ରାମାଞ୍ଚଳର ଦରିଦ୍ର ଜନସାଧାରଣଙ୍କ ପକ୍ଷରେ କଷ୍ଟଲବ୍ଧ । ଆଧୁନିକ ଚିକିତ୍ସାର ବ୍ୟୟବହୁଳତା ଏହାର ଏକମାତ୍ର ମୁଖ୍ୟ କାରଣ । ଅପରପକ୍ଷରେ ଅଜ୍ଞତା, ଅନ୍ଧ-ବିଶ୍ୱାସ, କୁସଂସ୍କାର ଜନିତ ଅନଗ୍ରସର ଏବଂ ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ଚେତନାର ଅଭାବ କେତେକ କ୍ଷେତ୍ରରେ ବ୍ୟକ୍ତି ବା ଗୋଷ୍ଠୀ ବିଶେଷଙ୍କୁ ଆଧୁନିକ ଚିକିତ୍ସା ଓ ସ୍ୱାସ୍ଥ୍ୟସେବାରେ ସୁଯୋଗ ନେବା ପ୍ରତି ବିମୁଖ କରିଥାଏ । ସୁତରାଂ ଅନଗ୍ରସର ଓ ଉନ୍ନତକାମୀ ଦେଶମାନଙ୍କରେ ଗ୍ରାମାଞ୍ଚଳରେ ବସବାସ କରୁଥିବା ଅଧିକାଂଶ ଜନସାଧାରଣ ମୁଖ୍ୟତଃ ପାରମ୍ପରିକ ଘରର ଚିକିତ୍ସକ ଓ ପ୍ରସବ ସହାୟକଙ୍କ ଉପରେ ନିର୍ଭରଶୀଳ ।

ଆମ ଦେଶରେ ପ୍ରଚଳିତ ପାରମ୍ପରିକ ଚିକିତ୍ସାପଦ୍ଧତି ଗୁଡ଼ିକ ମଧ୍ୟରେ ଆୟୁର୍ବେଦ, ସିଦ୍ଧ, ୟୁନାନୀ, ଯୋଗ, ପ୍ରାକୃତିକ ଚିକିତ୍ସା ଏବଂ ତିବ୍ବତୀୟ ଚିକିତ୍ସାପଦ୍ଧତି ଉଲ୍ଲେଖଯୋଗ୍ୟ । ଏଗୁଡ଼ିକ ମଧ୍ୟରେ ଆୟୁର୍ବେଦ ମୁଖ୍ୟ ଏବଂ ଅନ୍ୟାନ୍ୟ ପଦ୍ଧତିଗୁଡ଼ିକ କାଳକ୍ରମେ ଏହା ସହିତ ସାମିଲ୍ ହୋଇଯାଇ ଏକ ଦେଶୀୟ ଚିକିତ୍ସାପଦ୍ଧତିର ପ୍ରଚଳନ ହୋଇଛି ଯାହାକି ମୁଖ୍ୟତଃ ଆମର ଦେଶୀୟ ଭେଷଜ ଓ ଉଦ୍ଭିଦର ଉପଯୋଗ ଉପରେ ଆଧାରିତ ।

ଆମ ଦେଶର ପାରମ୍ପରିକ ଚିକିତ୍ସାପଦ୍ଧତି ଅତି ପୁରାତନ ଏବଂ ଆମର ଦେଶୀୟ ଭେଷଜ ଗୁଡ଼ିକର ପ୍ରୟୋଗ ସମ୍ପର୍କରେ ଅନୁଶୀଳନ ଆମକୁ ଇତିହାସର ଆଦିମୁଗକୁ ନେଇଯାଏ । ଭୈଷଜିକ ଗୁଣସମ୍ପନ୍ନ ବୃକ୍ଷଲତାର ଉପକାରିତା ସର୍ବପ୍ରଥମେ ଋକ୍‌ବେଦରେ ବର୍ଣ୍ଣିତ ହୋଇଛି ଯାହାକି ସମ୍ଭବତଃ ଖ୍ରୀ: ପୂ: ୪୫୦୦ରୁ ୧୬୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଲିଖିତ । ଋକ୍‌ବେଦରେ 'ସୋମ'ର ମନୁଷ୍ୟ ଉପରେ ପ୍ରଭାବ ସମ୍ପର୍କରେ ବର୍ଣ୍ଣନା କରାଯାଇଛି । ପରବର୍ତ୍ତୀ କାଳରେ ଲିଖିତ ଅଥର୍ବବେଦରେ ଭେଷଜର ପ୍ରୟୋଗ ସମ୍ପର୍କରେ ଅନେକ ସବିସ୍ତାର ବର୍ଣ୍ଣନା ମିଳେ । ସମ୍ଭବତଃ ଖ୍ରୀ: ପୂ: ୨୫୦୦ରୁ ୬୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ରଚିତ 'ଆୟୁର୍ବେଦ' ଅନେକ ପ୍ରକାରର ଭେଷଜର ଗୁଣ ଏବଂ ବିଭିନ୍ନ ଉପସର୍ଗରେ ସେଗୁଡ଼ିକର ପ୍ରୟୋଗ ସମ୍ପର୍କରେ ସବିସ୍ତୃତ ଆଲୋଚନା କରାଯାଇଛି । ଆୟୁର୍ବେଦ ପ୍ରାଚୀନ ଚିକିତ୍ସା ପଦ୍ଧତିର ଭିତ୍ତିଭୂମି । ଖ୍ରୀ:ପୂ: ୧୦୦୦ ପୂର୍ବରୁ ଲିଖିତ ଶୁଶ୍ରୁତ ସଂହିତା ଓ ଚରକ ସଂହିତାରୁ ଆମର ପ୍ରାଚୀନ ଚିକିତ୍ସାପଦ୍ଧତି କେତେକ ସମୃଦ୍ଧ ଥିଲା ତାହା ଜଣାଯାଏ । ଚରକ ସଂହିତାର ୧୨ ଗୋଟି ଅଧ୍ୟାୟ ଦ୍ରବ୍ୟ ଗୁଣ(materia medica) ସମ୍ବନ୍ଧିତ ଜ୍ଞାନର ଭଣ୍ଡାର । ଏଥିରେ ଭେଷଜଗୁଡ଼ିକୁ ୪୫ଟି ବିଭିନ୍ନ ଶ୍ରେଣୀଭୁକ୍ତ କରାଯାଇ ସେଗୁଡ଼ିକର ପ୍ରୟୋଗ ବିଷୟରେ ସବିସ୍ତୃତ ଆଲୋଚନା କରାଯାଇଛି । ପ୍ରାଚୀନ ଭାରତୀୟ ଚିକିତ୍ସା ପଦ୍ଧତିରେ ନିଶ୍ଚେତନ ପ୍ରଣାଳୀ ମଧ୍ୟ ଅନ୍ତର୍ଭୁକ୍ତ ଥିବାର ସୂଚନା ମିଳେ । ପ୍ରାୟ ୯୮୦ ଖ୍ରୀଷ୍ଟାବ୍ଦରେ ଲିଖିତ 'ଭୋଜପ୍ରବନ୍ଧ' ନାମକ ପୁସ୍ତକରେ ଶଲ୍ୟଚିକିତ୍ସା ପୂର୍ବରୁ ଭେଷଜ ଆଘ୍ରାଣ କରାଯାଉଥିବା ବର୍ଣ୍ଣିତ ଅଛି ଏବଂ ବୁଦ୍ଧଦେବଙ୍କ ସମୟରେ 'ସମ୍ମୋହିନୀ' ନାମକ ନିଶ୍ଚେତକ ଭେଷଜ ବ୍ୟବହୃତ ହେଉଥିବାର ସୂଚନା ମିଳେ ।

ଆୟୁର୍ବେଦ ଭାରତର ସୀମା ଟପି ସୁଦୂର ମିଶର, ଗ୍ରୀସ୍ ଏବଂ ରୋମ ଦେଶକୁ ପରିବ୍ୟାପ୍ତ ହୋଇ ଗ୍ରୀକ୍ ରୋମାନ ଓ ଆରବ ଦେଶର ଚିକିତ୍ସାପଦ୍ଧତିକୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । ମହାବୀର ଆଲେକ୍‌ଜାଣ୍ଡାରଙ୍କ ସମୟରେ ଭାରତୀୟ ଚିକିତ୍ସାପଦ୍ଧତି ଅନ୍ୟାନ୍ୟ ଦେଶର ଚିକିତ୍ସାପଦ୍ଧତିମାନଙ୍କଠାରୁ ବହୁ ଗୁଣରେ ସମୃଦ୍ଧ ଥିଲା । ସୁପ୍ରସିଦ୍ଧ ଗ୍ରୀକ୍ ଚିକିତ୍ସାବିତ୍ ଡାୟୋସ୍କୋରାଇଡ୍‌ସ ( ‑ioscoroides)ଙ୍କ ଲିଖିତ ପୋଥିପତ୍ରରେ ଅନେକ ଭାରତୀୟ ଭୈଷଜିକ ବୃକ୍ଷଲତାର ବର୍ଣ୍ଣନା ମିଳେ । ବିଶେଷତଃ ସ୍ନାୟବିକରେ ଧାତୁର ଧୂମପାନ, ପକ୍ଷାଘାତ ଏବଂ ଅଜୀର୍ଣ୍ଣରେ କୋଚିଲାର ଉପଯୋଗିତା ଏବଂ ବିରେଚକ ହିସାବରେ ଜାମଲଗୋଟା (croton)ର ବ୍ୟବହାର ସମ୍ପର୍କରେ ଭାରତୀୟ ଚିକିତ୍ସାଶାସ୍ତ୍ରର ଅବଦାନ ସମ୍ପର୍କରେ ଏଥିରେ ଉଲ୍ଲେଖ ରହିଛି । ରୋମାନମାନେ ମଧ୍ୟ ଭାରତୀୟ ଭେଷଜ ପ୍ରତି ବିଶେଷ ଭାବରେ ଆକୃଷ୍ଟ ହୋଇଥିଲେ ଏବଂ ସେକାଳରେ ଭାରତୀୟ ଭୈଷଜିକ ଚେରମୂଳର ରପ୍ତାନି ଦ୍ୱାରା ରୋମ୍ ସାମ୍ରାଜ୍ୟରୁ ବହୁପରିମାଣର ସ୍ୱର୍ଣ୍ଣମୁଦ୍ରା ଭାରତକୁ ବୋହି ଆସିଥିଲା ।

ପ୍ରାଚୀନ ଭାରତୀୟ ଚିକିତ୍ସା ପଦ୍ଧତିର ଏହି ଗୌରବମୟ ଯୁଗର ଅବସାନ ଘଟିଥିଲା । ପରବର୍ତ୍ତୀ କାଳରେ ଭାରତବର୍ଷ ଉପରେ ବିଦେଶୀମାନଙ୍କ ପୁନଃ ପୁନଃ ଆକ୍ରମଣଫଳରେ । ଏହା ଫଳରେ ବହୁ ମୂଲ୍ୟବାନ ତଥ୍ୟସମ୍ବଳିତ ଆୟୁର୍ବେଦୀୟ ପୋଥିପତ୍ର ବିଲୁପ୍ତ ହେଲେ

ଏବଂ ନୂତନ ମୌଳିକ ଅନୁଧ୍ୟାନ ବାଧାପ୍ରାପ୍ତ ହେଲା । ବୌଦ୍ଧ ଚିକିତ୍ସା କାଳକ୍ରମେ ମଠରର ପୂଜକଙ୍କ ହାତକୁ ଚାଲିଯିବା ଫଳରେ ଭେଷଜ ଅପେକ୍ଷା ମନ୍ତ୍ରତନ୍ତ୍ର ଓ କବଚ ଚିକିତ୍ସାର ପ୍ରଧାନ ଅବଲମ୍ବନ ସ୍ୱରୂପରେ ଗୃହୀତ ହେବାକୁ ଲାଗିଲା । ଏହା ଗୋଟିଏ ଗୋଷ୍ଠୀର ଏକଚାଟିଆ କାରବାର ହୋଇଯିବା ଫଳରେ ଶବବ୍ୟବଚ୍ଛେଦ, ଶଲ୍ୟତନ୍ତ୍ର ଏବଂ ଶଲ୍ୟଚିକିତ୍ସା ଅପବିତ୍ର ହୀନ ଦୃଷ୍ଟିରେ ଦେଖାଗଲା ଏବଂ ଚିକିତ୍ସା ଶାସ୍ତ୍ରର କ୍ରମବିକାଶ ପରିବର୍ତ୍ତେ ଅଧୋଗତି ଘଟିଲା । ଭାରତବର୍ଷରେ ମୁସଲମାନ ଶାସନ ପ୍ରତିଷ୍ଠିତ ହେବା ପରେ ଆରବ ଓ ଗ୍ରୀକ୍ ଚିକିତ୍ସା ଶାସ୍ତ୍ରର ଅନୁପ୍ରବେଶ ଏବଂ ଭାରତୀୟ ଚିକିତ୍ସାପଦ୍ଧତି ସହିତ ଏହାର ମିଶ୍ରଣ ଘଟିଥିଲା । ପରବର୍ତ୍ତୀକାଳରେ ଇଂରେଜ ଓ ଅନ୍ୟାନ୍ୟ ୟୁରୋପୀୟମାନଙ୍କ ଆଗମନ ଓ ସାମ୍ରାଜ୍ୟ ସ୍ଥାପନ ଫଳରେ ପାଶ୍ଚାତ୍ୟ ଦେଶୀୟ ଚିକିତ୍ସା ଶାସ୍ତ୍ରର ପ୍ରସାର ଘଟିଲା ଏବଂ ଏହା ଦେଶୀୟ ଚିକିତ୍ସା ପଦ୍ଧତିକୁ ଅପସାରିତ କରିଥିଲା । ଅବଶ୍ୟ ଏହା ଫଳରେ ଅନେକ ପାଶ୍ଚାତ୍ୟ ବୈଦେଶିକ ବୃକ୍ଷଲତା ଗୁଳ୍ମଙ୍କୁ ଆମଦାନୀ ହୋଇ କାଳକ୍ରମେ ଭାରତୀୟ ଦେଶୀୟ ଭେଷଜ ସ୍ୱଭାବରେ ପରିଗଣିତ ହୋଇପାରିଛି ।

ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ ଆମ ଦେଶୀୟ ଭେଷଜ ଏବଂ ସେଗୁଡ଼ିକର ଚିକିତ୍ସା ହେତୁରେ ପ୍ରୟୋଗ ସମ୍ପର୍କରେ ଆଧୁନିକ ବୈଜ୍ଞାନିକ ଅନୁଧ୍ୟାନ ଓ ଅନୁଶୀଳନ ଏବେ ସେ ସମ୍ବନ୍ଧୀୟ ତଥ୍ୟ ସଙ୍କଳନର ଆରମ୍ଭ ଇଂରେଜ ଶାସନକାଳରେ ଗତ ଶତାବ୍ଦୀର ପ୍ରାରମ୍ଭରେ ହିଁ ହୋଇଥିଲା ଏବଂ ଅନେକ ବିଦେଶୀ ବୈଜ୍ଞାନିକ ଓ ଚିକିତ୍ସକ ଏ ଦିଗରେ ଅଧ୍ୟବସାୟ ସହ ବହୁ ମୂଲ୍ୟବାନ୍ ପୁସ୍ତକ ରଚନା କରିଯାଇଛନ୍ତି । ଏହି ପ୍ରସଙ୍ଗରେ ସାର୍ ଉଇଲିୟମ୍ ଜୋନ୍ସ, ଜନ୍ ଫ୍ଲେମିଙ୍ଗ, ଏନ୍‌ସ୍ଲି ଓ ଓଶନେସି ଏବଂ ଓ୍ୱାରିଙ୍ଗଙ୍କ ଅବଦାନ ଉଲ୍ଲେଖଯୋଗ୍ୟ । ୧୮୬୮ ଖ୍ରୀଷ୍ଟାବ୍ଦରେ ଓ୍ୱାରିଙ୍ଗଙ୍କ ପ୍ରଣୀତ Pharmacopocia of Indiaର ପ୍ରକାଶନ ପରେ ଦେଶୀୟ ଭେଷଜଗୁଡ଼ିକର ଉପାଦେୟତା ପ୍ରମାଣିତ ହେଲା ଏବଂ ଏଗୁଡ଼ିକ ମଧ୍ୟରୁ କେତେକ ପରେ British Pharmacopociaର ଅନ୍ତର୍ଭୁକ୍ତ ହେବାର ସମ୍ମାନ ଲାଭକଲେ । ପରବର୍ତ୍ତୀ କାଳରେ ମୋହିଉଦ୍ଦିନ୍, ଶରିଫ୍, ୟୁ. ସି. ଦତ୍ତ, ଫ୍ଲୁକିଗର୍, ହାନବେରୀ, ଡାଇମକ୍, ଓ୍ୱାର୍ଡେନ, ହୁପର୍, ସାର୍ ଜର୍ଜ ଓ୍ୱାଟ୍, କାନାଇଲାଲ୍ ଦେ, କର୍ତ୍ତିକାର୍ ଓ ବସୁ ଆଦି ସୁନାମଧନ୍ୟ ବୈଜ୍ଞାନିକ-ମାନଙ୍କ ପ୍ରଣୀତ ପୁସ୍ତକ ଦେଶୀୟ ଭେଷଜମାନଙ୍କୁ ଲୋକଲୋଚନକୁ ଆଣିବାରେ ଅଧିକ ସହାୟକ ହୋଇଥିଲା ।

ଉପରୋକ୍ତ ଭେଷଜବିତ୍ ଏବଂ ଆହୁରି ଅନେକ ବିଦେଶୀ ଚିକିତ୍ସକ ହୃଦୟଙ୍ଗମ କରିପାରିଥିଲେ ଯେ ଦେଶୀୟ ଚିକିତ୍ସାପଦ୍ଧତି ବିଗତ ଅନେକ ଶତାବ୍ଦୀ ଧରି ବହୁ ଝଡ଼ଝଞ୍ଜାର ସମ୍ମୁଖୀନ ହେବା ସତ୍ତ୍ୱେ ତିଷ୍ଠିପାରିଥିବାରୁ ଏବଂ ଏହା ଅଗଣିତ ଚିକିତ୍ସକଙ୍କର ପରୀକ୍ଷା ଓ ଅଭିଜ୍ଞତା ନିଃସୃତ ହୋଇଥିବାରୁ ଏହାକୁ ଅବୈଜ୍ଞାନିକ କହି ଏଡ଼ାଇ ଦେଇ ହେବନାହିଁ । ପୁନଶ୍ଚ ଦେଶୀୟ ଚେରମୂଳ ଓ ଭେଷଜ ଆଦିକୁ ରୋଗ ଚିକିତ୍ସାରେ ପ୍ରୟୋଗ କଲେ ତାହା ଅର୍ଥନୈତିକ ଦୃଷ୍ଟିକୋଣରୁ ସୁବିଧାଜନକ ହେବା ସାଙ୍ଗକୁ ଏହା ଏ ଦେଶର

କରିବାକୁ ତଥା ଏ ଦେଶର ଜନସାଧାରଣଙ୍କର ପରମ୍ପରାଗତ ବିଶ୍ୱାସ, ଅଭ୍ୟାସ ଓ ସଂସ୍କୃତିର ଅନୁକୂଳ । ସୁତରାଂ ଦେଶୀୟ ଭେଷଜମାନଙ୍କ ଉପରେ ବୈଜ୍ଞାନିକ ପରୀକ୍ଷା ନିରୀକ୍ଷା କରିବା ନିମନ୍ତେ ସର୍ବପ୍ରଥମେ ୧୯୨୧ ସାଲରେ କଲିକତାଠାରେ School of Tropical Medicine ସ୍ଥାପନ କରାଯାଇଥିଲା ଏବଂ ଏ ଗବେଷଣାର ମୁଖ୍ୟ କର୍ଣ୍ଣଧାର ହେଲେ ସ୍ୱର୍ଗତ ସାର୍ ରାମନାଥ ଚୋପ୍ରା । ଭାରତ ସ୍ୱାଧୀନ ହେବା ପରେ ଦେଶୀୟ ଭେଷଜମାନଙ୍କ ଉପରେ ଗବେଷଣା ଅଧିକ ବ୍ୟାପକ ସ୍ତରରେ ତ୍ରିବିଧ ଆଭିମୁଖ୍ୟ ନେଇ ଆରମ୍ଭ କରାଗଲା । ଏହି ଆଭିମୁଖ୍ୟଗୁଡ଼ିକ ହେଲା—

୧ । ଦେଶରେ ପ୍ରଚୁର ପରିମାଣରେ ଥିବା ଭେଷଜ ଗୁଣ ସମ୍ପନ୍ନ ବୃକ୍ଷଲତା ଓ ଅନ୍ୟାନ୍ୟ ସମ୍ପଦକୁ ସ୍ୱାସ୍ଥ୍ୟ ସେବାରେ ପ୍ରୟୋଗ ନିମନ୍ତେ ଉପଯୁକ୍ତ ଓ ଉପାଦେୟ ଭେଷଜ ପ୍ରସ୍ତୁତ କରି ଦେଶର ଚାହିଦା ମେଣ୍ଟାଇବାରେ ସ୍ୱାବଲମ୍ବୀ ହେବା ।

୨ । ଆୟୁର୍ବେଦ, ୟୁନାନି ଏବଂ ଅନ୍ୟାନ୍ୟ ଦେଶୀୟ ଚିକିତ୍ସାପଦ୍ଧତିରେ ବ୍ୟବହୃତ ଭେଷଜଗୁଡ଼ିକର ଗୁଣ ପରୀକ୍ଷା କରି ଏବଂ ସେଗୁଡ଼ିକର ରୋଗ ବ୍ୟାଧିରେ ପ୍ରୟୋଗ ସଂକ୍ରାନ୍ତ ତଥ୍ୟ ସଂଗ୍ରହ କରି ଉପଯୁକ୍ତ ଗୁଣ ଓ ମାନ ସମ୍ପନ୍ନ ଭେଷଜଗୁଡ଼ିକୁ ଆଧୁନିକ ଚିକିତ୍ସା ପଦ୍ଧତିରେ ଅନ୍ତର୍ଭୁକ୍ତ କରିବା ।

୩ । ଦେଶର ଦରିଦ୍ର ଜନସାଧାରଣଙ୍କ ଆର୍ଥିକ ସ୍ଥିତି ପକ୍ଷେ ଅନୁକୂଳ ସୁଲଭ ଭେଷଜ ଯୋଗାଇବାରେ ସକ୍ଷମ ହେବା, ଯେପରିକି ସେମାନେ ଅପରିହାର୍ଯ୍ୟ ଚିକିତ୍ସାରୁ ବଞ୍ଚିତ ନହେବେ ।

ଏହି ଉଦ୍ଦେଶ୍ୟଗୁଡ଼ିକର ସଫଳ ରୂପାୟନ ନିମନ୍ତେ ୧୯୫୦ ସାଲରେ ଲକ୍ଷ୍ନୌଠାରେ କାଉନ୍‌ସିଲ୍ ଅଫ୍ ସାଇଣ୍ଟିଫିକ୍ ଅଣ୍ଡ୍ ଇଣ୍ଡଷ୍ଟ୍ରିଆଲ ରିସର୍ଚ୍ଚ ଆନୁକୂଲ୍ୟରେ କେନ୍ଦ୍ରୀୟ ଭେଷଜ ଗବେଷଣା ପ୍ରତିଷ୍ଠାନ ସ୍ଥାପନ କରାଯାଇଥିଲା । ଏହାଛଡ଼ା ଭାରତୀୟ ଆୟୁର୍ବିଜ୍ଞାନ ଗବେଷଣା ସଂସ୍ଥା ଓ ଭାରତୀୟ କୃଷିଗବେଷଣା ସଂସ୍ଥା ମଧ୍ୟ ଏପ୍ରକାର ଗବେଷଣାକୁ ତ୍ୱରାନ୍ୱିତ ଓ ଉତ୍ସାହିତ କରିବା ନିମନ୍ତେ ପ୍ରଚୁର ପରିମାଣରେ ଅନୁଦାନର ବ୍ୟବସ୍ଥା କଲେ । ଏହା ସାଙ୍ଗକୁ ଦେଶର ବିଭିନ୍ନ ସ୍ଥାନରେ ଆୟୁର୍ବିଜ୍ଞାନ ମହାବିଦ୍ୟାଳୟମାନଙ୍କର ଭେଷଜତତ୍ତ୍ୱ ବିଭାଗଗୁଡ଼ିକରେ ତଥା ଭେଷଜ ଶିଳ୍ପ ପ୍ରତିଷ୍ଠାନମାନଙ୍କର ଗବେଷଣା ସଂସ୍ଥାଦ୍ୱାରା ମଧ୍ୟ ଦେଶୀୟ ଭେଷଜମାନଙ୍କ ଉପରେ ମୌଳିକ ଓ ବ୍ୟାବହାରିକ ଗବେଷଣାର ସୂତ୍ରପାତ ହେଲା । ଏ ପ୍ରକାର ଉଦ୍ୟମ ଫଳରେ ଅନେକ ଦେଶୀୟ ଜଡ଼ିବୁଟି ଭେଷଜର ଆଧୁନିକ ପଦ୍ଧତିରେ ପ୍ରସ୍ତୁତ ସମ୍ପନ୍ନ ହୋଇ ସେଗୁଡ଼ିକ ଆଧୁନିକ ଭେଷଜମାନଙ୍କ ମଧ୍ୟରେ ପରିଗଣିତ ହୋଇପାରିଛନ୍ତି । ସୁଖର କଥା, ଏବେ ଆମ ଦେଶରେ କେତେକ ଭେଷଜ ଶିଳ୍ପ ପ୍ରତିଷ୍ଠାନ ସଂପୂର୍ଣ୍ଣ ମାତ୍ରାରେ ଦେଶୀୟ ଚିକିତ୍ସାପଦ୍ଧତିର ଫର୍ମୁଲା ଅନୁସାରେ ଆଧୁନିକ ପଦ୍ଧତିରେ ବିଭିନ୍ନ ପ୍ରକାର ଭେଷଜ ପ୍ରସ୍ତୁତ କରି ବିକ୍ରୟ କରୁଛନ୍ତି ଏବଂ ସେଗୁଡ଼ିକ ଆଧୁନିକ ଚିକିତ୍ସାପଦ୍ଧତିରେ ସ୍ୱୀକୃତ ଏବଂ ବ୍ୟବହୃତ ହେଉଛି । ଏ ଧରଣର ଭେଷଜ ଶିଳ୍ପ ପ୍ରତିଷ୍ଠାନର ସଂଖ୍ୟା ବର୍ତ୍ତମାନ କମ୍ ହେଲେ ସୁଦ୍ଧା

ଭବିଷ୍ୟତରେ ଏମାନଙ୍କ ସଂଖ୍ୟା ଅଧିକ ବୃଦ୍ଧି ପାଇବ ଏବଂ ଦେଶୀୟ ଭେଷଜ ଓ ଦେଶୀୟ ଚେରମୂଳରୁ ପ୍ରସ୍ତୁତ ନୂତନ ଭେଷଜ ଓ ଉପକରଣ ଭବିଷ୍ୟତରେ ଅଧିକ ଅଧିକ ଓ ବହୁଳ ଭାବେ ବ୍ୟବହୃତ ହେବ ବୋଲି ଆଶା କରାଯାଏ ।

ଦେଶୀୟ ଚିକିତ୍ସାପଦ୍ଧତି ଓ ଦେଶୀୟ ଭେଷଜର ପୁନଃପ୍ରଚଳନ ଏବଂ ଏହାର ପୁନର୍ବିକାଶ ଉପରେ ଅଧିକ ଏକ ଚିନ୍ତା ହେବ ଏହାକୁ ସରକାରୀ ଭାବେ ଅନୁମୋଦନ କରି ଏ ଦିଗରେ ଶିକ୍ଷା ଓ ଗବେଷଣା ନିମନ୍ତେ ସୁଯୋଗ ପ୍ରଦାନ କରିବା । ଫଳରେ ତଥା ଭାରତ ସରକାର ଦେଶୀୟ ପାରମ୍ପରିକ ଚିକିତ୍ସା ପଦ୍ଧତିକୁ ଜାତୀୟ ସ୍ୱାସ୍ଥ୍ୟସେବା ନିମନ୍ତେ ଅନୁମୋଦନ କରିଛନ୍ତି । ଦେଶରେ ବର୍ତ୍ତମାନ ୧୦୮ ଟି ଶିକ୍ଷାନୁଷ୍ଠାନ ଆୟୁର୍ବେଦ, ୟୁନାନି ଏବଂ ସିଦ୍ଧ ଚିକିତ୍ସା ଶାସ୍ତ୍ରରେ ସ୍ନାତକ ଉପାଧି ପ୍ରଦାନ କରୁଛନ୍ତି । ସ୍ନାତକୋତ୍ତର ଶିକ୍ଷା ନିମନ୍ତେ ଦୁଇଟି ଅନୁଷ୍ଠାନ ଏବଂ ଜାମ୍‌ନଗରଠାରେ ଗୋଟିଏ ଆୟୁର୍ବେଦ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଛି । ଏହି ଶିକ୍ଷା ଏବଂ ଦେଶୀୟ ଚିକିତ୍ସାପଦ୍ଧତି ଉପରେ ଗବେଷଣାକୁ ନିୟନ୍ତ୍ରଣ କରିବାପାଇଁ କେନ୍ଦ୍ର ସରକାର ଏକ ନିୟନ୍ତ୍ରଣକାରୀ କାଉନ୍‌ସିଲ୍ ଗଠନ କରିଅଛନ୍ତି । ସାରା ଦେଶରେ ବର୍ତ୍ତମାନ ଆପାତତଃ ୨୭୧୦୦୦ ଦେଶୀୟ ଚିକିତ୍ସାପଦ୍ଧତିର ରେଜିଷ୍ଟ୍ରିଭୁକ୍ତ ଚିକିତ୍ସକ ଅଛନ୍ତି (ଏମାନଙ୍କ ମଧ୍ୟରୁ ୨୨୩୦୦୦ ଆୟୁର୍ବେଦ, ୩୦୨୫ ୟୁନାନି ଏବଂ ୧୮୧୨୮ ସିଦ୍ଧ ଚିକିତ୍ସକ) । ଭାରତ ସରକାର ମୌଳିକ ସ୍ୱାସ୍ଥ୍ୟ ସେବା ନିମନ୍ତେ ଉପଯୋଗୀ ଦେଶୀୟ ଭେଷଜର ତାଲିକା ପ୍ରସ୍ତୁତ କରିଛନ୍ତି ଏବଂ ତଦନୁଯାୟୀ ଗୋଟିଏ ଭେଷଜ ବାକ୍ସ ସେ ସ୍ୱାସ୍ଥ୍ୟକର୍ମୀମାନ (Community Health Worker)ଙ୍କୁ ଗ୍ରାମାଞ୍ଚଳରେ ଦେଇଥିବା ନିମନ୍ତେ ବ୍ୟବସ୍ଥା କରାଯାଇଛି । ଏହାଛଡ଼ା ଦେଶୀୟ ପ୍ରଣାଳୀରେ ଚିକିତ୍ସା କରିବା ନିମନ୍ତେ ଏଯାବତ୍ ୨୧୫ଟି ହସପିଟାଲ ଏବଂ ୧୪୦୦୦ ଡିସ୍‌ପେନସାରୀ ପ୍ରତିଷ୍ଠା କରାଯାଇଛି ।

ଅଲ୍‌ମା ଆଟା ପ୍ରସ୍ତାବକ୍ରମେ ଏ ଶତାବ୍ଦୀର ଶେଷ ଅର୍ଥାତ୍ ୨୦୦୦ ଖ୍ରୀଷ୍ଟାବ୍ଦ ସୁଦ୍ଧା ସାରା ପୃଥିବୀରେ ପ୍ରତ୍ୟେକ ନାଗରିକଙ୍କ ନିକଟରେ ମୌଳିକ ସ୍ୱାସ୍ଥ୍ୟସେବା ପହଞ୍ଚାଇବାକୁ ହେବ । କାରଣ ଏହା ସ୍ୱୀକାର କରାଯାଇଛି ଯେ ପ୍ରତ୍ୟେକ ନାଗରିକର ସୁସ୍ଥ ଜୀବନ ଯାପନ କରିବା ନିମନ୍ତେ ଅଧିକାର ରହିଛି ଏବଂ ସେ ନିଜର ରୁଚି ଓ ସୁବିଧା ଅନୁସାରେ ସ୍ୱାସ୍ଥ୍ୟସେବା ପାଇବାକୁ ହକ୍‌ଦାର । ଏହି ମୌଳିକ ସ୍ୱାସ୍ଥ୍ୟସେବାର ପରିସର ମଧ୍ୟରେ ନିରାପଦ ପ୍ରସୂତି (Safe maternity), ଶିଶୁର ସ୍ୱାସ୍ଥ୍ୟ ଓ ନିରୋଗ ବୃଦ୍ଧି ସାଧନ, ପ୍ରାପ୍ତବୟସ୍କ ଅବସ୍ଥାରେ ରୋଗର ଆକ୍ରମଣରୁ ରକ୍ଷାକରିବା, ବ୍ୟକ୍ତି ତଥା ଗୋଷ୍ଠୀକୁ ପରିପାର୍ଶ୍ୱର ବିପଦରୁ ରକ୍ଷା କରିବା ଏବଂ ପ୍ରତ୍ୟେକ ବ୍ୟକ୍ତିକୁ ରୋଗବ୍ୟାଧି ଘଟିଲେ ଆବଶ୍ୟକ ଓ ଉପଯୁକ୍ତ ଚିକିତ୍ସା ପ୍ରଦାନ ଆଦି ବହୁମୁଖୀ ସ୍ୱାସ୍ଥ୍ୟସେବା ଅନ୍ତର୍ଭୁକ୍ତ । ୨୦୦୦ ଖ୍ରୀଷ୍ଟାବ୍ଦ ସୁଦ୍ଧା ପ୍ରତ୍ୟେକ ନାଗରିକଙ୍କୁ ଏହି ବହୁମୁଖୀ ସ୍ୱାସ୍ଥ୍ୟ ସେବା ପହଞ୍ଚାଇବାକୁ ହେଲେ ସେଥି ସକାଶେ ପରିକଳ୍ପନା, ଲୋକବଳ, ଭେଷଜ ତଥା ଅନ୍ୟାନ୍ୟ ଉପକରଣ ଏବଂ ପ୍ରଶାସନିକ ଓ ପ୍ରଶିକ୍ଷଣ ବ୍ୟବସ୍ଥା ଆବଶ୍ୟକ ଏବଂ ସେଥିନିମନ୍ତେ ଯେଉଁ ସମ୍ବଳ ଲୋଡ଼ା ତାହା ପୃଥିବୀର ଅଧିକାଂଶ ଦେଶ ପକ୍ଷରେ କଷ୍ଟସାଧ୍ୟ । ସୁତରାଂ (୧୯୭୭ ସାଲର ମେ ମାସରେ) ଏ ଦିଗରେ ପ୍ରତ୍ୟେକ ଦେଶରେ ବିଶେଷ ଭା

ଉନ୍ନତକାମୀ ଦେଶମାନଙ୍କରେ ପ୍ରଚଳିତ ପାରମ୍ପରିକ ଚିକିତ୍ସାପଦ୍ଧତିର ବିନିଯୋଗ ଦ୍ୱାରା ଲକ୍ଷ୍ୟ ହାସଲ କରିବା ନିମନ୍ତେ ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥା ଗୁରୁତ୍ୱର ସହିତ ତତ୍ପରତାର କେତେକ ଅନୁସନ୍ଧାନ କରିଛନ୍ତି । ଏହି ସନ୍ଧାନ ଫଳରେ ଜଣାଯାଉଛି ଯେ ଏ ଯାବତ୍ ଆଫ୍ରିକା ମହାଦେଶରେ ଶତକଡ଼ା ୮୦ ଭାଗ ଲୋକ ପାରମ୍ପରିକ ଚିକିତ୍ସାପଦ୍ଧତିଦ୍ୱାରା ସେମାନଙ୍କର ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ଆବଶ୍ୟକତା ମେଣ୍ଟାଇବାକୁ ବାଧ । ଏହି ପାରମ୍ପରିକ ଚିକିତ୍ସା ମୁଖ୍ୟତଃ ରୋଗରୁ ନିରୋଗ ସାଧନପାଇଁ ନିର୍ଦ୍ଦିଷ୍ଟ ହେଲେହେଁ ଏଥିରେ ପ୍ରତିଷେଧକ ବ୍ୟବସ୍ଥା ମଧ୍ୟ ରହିଛି, ଯଥା ଟିକାଦାନ, ରକ୍ଷାକବଚ, ଅର୍ଘ୍ୟ ଏବଂ କେତେକ ଝଣ୍ଡାଶୁଣ୍ଡା ଆଦି । ଏ ପଦ୍ଧତିରେ ବହୁଳ ଉଦ୍ଭିଦଜ, ପ୍ରାଣୀଜ ଓ ଧାତବ ବସ୍ତୁ ଭେଷଜ ରୂପେ ପ୍ରୟୋଗ କରାଯାଏ ଏବଂ ଏହି ଭେଷଜଗୁଡ଼ିକ ସାଧାରଣତଃ ଢ଼ାଙ୍କିଶାଳ ଉପକରଣ (Kitchen utensils) ଦ୍ୱାରା ପ୍ରସ୍ତୁତ । ଏହି ପଦ୍ଧତିର ଚିକିତ୍ସକମାନଙ୍କର ସରକାରୀ ସ୍ୱୀକୃତ ନାହିଁ ଏବଂ ଏମାନେ ଅକୃତକାର୍ଯ୍ୟ ହେଲେ ଦଣ୍ଡିତ ହୋଇଥାନ୍ତି । ଆଫ୍ରିକା ମହାଦେଶର ପାରମ୍ପରିକ ଚିକିତ୍ସା-ପଦ୍ଧତି ଦ୍ୱାରା ମାନସିକବିକାର ଓ ବ୍ୟାଧିର ଚିକିତ୍ସା ସଫଳଭାବେ କରାଯାଇପାରୁଥିବା ଏବଂ ଆଧୁନିକ ଚିକିତ୍ସା ସହିତ ଏହାର ପ୍ରୟୋଗ ଫଳରେ ତୁଳନାତ୍ମକରେ ଚିକିତ୍ସା ଅଧିକ ଫଳ-ପ୍ରଦ ହେବାର ସୂଚନା ମିଳିଛି । ସେହିପରି ଲାଟିନ୍ ଆମେରିକାସ୍ଥ ଦେଶରେ ପାରମ୍ପରିକ ଚିକିତ୍ସାପଦ୍ଧତି ସେ ଦେଶର ଅଧିକାଂଶ ଜନସାଧାରଣଙ୍କଦ୍ୱାରା ଅନୁସୃତ । ଏହି ପଦ୍ଧତି ହିପୋକ୍ରେଟିସ୍‌ଙ୍କ humoral theory ଉପରେ ଆଧାରିତ ଏବଂ ଗ୍ୟାଲେନିକ୍ସ ଭେଷଜ (Galenical preparations) ଏଥିରେ ମୁଖ୍ୟତଃ ବ୍ୟବହୃତ ହୋଇଥାଏ । ଏହି ପଦ୍ଧତିରେ ଉପଯୁକ୍ତ ଗୁଣସମ୍ପନ୍ନ ଖାଦ୍ୟ ଓ ଉଦ୍ଭିଦଜ ଭେଷଜର ପ୍ରୟୋଗ ଦ୍ୱାରା ବହୁଳ ଶାରୀରିକ ଓ ମାନସିକ ବ୍ୟାଧିର ଚିକିତ୍ସା କରାଯାଇଥାଏ । ପାରମ୍ପରିକ ଚିକିତ୍ସା ପଦ୍ଧତି ଅନୁସରଣ କରି ସ୍ୱାସ୍ଥ୍ୟସେବା ପହଞ୍ଚାଇବାରେ ଚୀନ୍‌ଦେଶ ଉଲ୍ଲେଖଯୋଗ୍ୟଭାବେ ସଫଳ ହୋଇଛି । ଚୀନ୍ ଦେଶର ପାରମ୍ପରିକ ଚିକିତ୍ସାପଦ୍ଧତି ଅତି ପୁରାତନ ( ଏ ସମ୍ପର୍କରେ ଖ୍ରୀ: ପୂ: ୧୮୦୦ ସମୟର ସ୍ୱାନ୍ ରାଜବଂଶ କାଳର ଭଗ୍ନାବଶେଷ ଖୋଦନ କରି ସୂଚନା ମିଳିଛି) ଏବଂ ଏ ସମ୍ବନ୍ଧୀୟ ପ୍ରାଚୀନ ପୁସ୍ତକ 'Yellow Emperors' Internal Classic' ସମ୍ଭବତଃ ଖ୍ରୀ:ପୂ: ୩୦୦ରେ ରଚିତ ହୋଇଥିବାର ଜଣାଯାଇଛି । ଏଥିରେ ଚୀନ୍‌ଦେଶୀୟ ଚିକିତ୍ସାପଦ୍ଧତିର ମୂଳତତ୍ତ୍ୱ (basic theory) ବ୍ୟତୀତ ସ୍ୱାସ୍ଥ୍ୟରକ୍ଷା, ରୋଗର ଲକ୍ଷଣ ଓ ନିଦାନ, ଭେଷଜ ଓ ଚିକିତ୍ସା ବ୍ୟବସ୍ଥା ତଥା ଆକ୍ୟୁପଙ୍କଚର୍ ଏବଂ ମୋକ୍ସିବସ୍ଚନ୍ (Moxibustion) ସମ୍ପର୍କରେ ଉଲ୍ଲେଖ କରାଯାଇଛି । ଟ୍ୟାଙ୍ଗ ରାଜ-ବଂଶର ରାଜତ୍ୱକାଳରେ (ଖ୍ରୀ ଅ: ୬୦୦ରୁ ୯୦୦)ମଧ୍ୟରେ ଜିନ୍ ଜିଉ ବିନ୍ (Xin Xiu Bin) ନାମକ ପ୍ରଥମ ଦ୍ରବ୍ୟଗୁଣ ପୁସ୍ତକ ରଚିତ ହୋଇଥିଲା । ଏପର୍ଯ୍ୟନ୍ତ ଚୀନ୍‌ର ପାରମ୍ପରିକ ଚିକିତ୍ସା ଶାସ୍ତ୍ର ୧୦୦୦୦ ପୁସ୍ତକ,୫୦୦୦ ପ୍ରକାରର ଉଦ୍ଭିଦଜ ଭେଷଜ ଏବଂ ବହୁଳ ଆଭିଜ୍ଞତାର ସମ୍ଭାରର ଅଧିକାରୀ ହୋଇପାରିଛି । ଏହି ପାରମ୍ପରିକ ଚିକିତ୍ସାପଦ୍ଧତି ଏବେ କେନ୍ଦ୍ରୀୟ ଯେ ୧୯୪୯ ସାଲରେ କ୍ୟୁମିଣ୍ଟାଙ୍ଗ ସରକାର ଆଇନ୍ ପ୍ରଣୟନ ଦ୍ୱାରା ଏହାକୁ ନଷ୍ଟ କରିବାରେ ସଫଳ ହୋଇପାରିନଥିଲେ । ଚୀନ୍ ସାଧାରଣତନ୍ତ୍ର ସ୍ଥାପିତ

ସେବାରେ ପାରମ୍ପରିକ ଚିକିତ୍ସକଙ୍କର ବହୁ ଅଭିଜ୍ଞତା ଓ ବହୁଳ ପ୍ରଚାର ରହିଛି ଏବଂ ଆଧୁନିକ ଚିକିତ୍ସା ସହ ସହଜ ସହଯୋଗ ସମନ୍ୱୟ ସମ୍ମିଶ୍ରଣ ଫଳରେ ରୋଗ ଚିକିତ୍ସା ଏବଂ ସ୍ୱାସ୍ଥ୍ୟସେବା କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ସଫଳତା ମିଳିଛି । ଗତ ୩୦ ବର୍ଷ ମଧ୍ୟରେ ଚୀନ୍‌ରେ ଉଦ୍ଭିଜ ଭେଷଜର ଏପରି ବହୁଳ ପ୍ରଚାର ହୋଇଛି ଯେ, ସେଠାରେ ପ୍ରାୟ ୪୦,୦୦୦୦୦ ହେକ୍ଟର ଜମିରେ ଭେଷଜ ବୃକ୍ଷଲତା ଚାଷ କରାଯାଏ । ଏ ଧରଣର ଭେଷଜ ପ୍ରସ୍ତୁତ କରିବା ପାଇଁ ୮୦୦ କାରଖାନାରେ ପ୍ରାୟ ୮୦,୦୦୦ ଲୋକ ନିଯୁକ୍ତ ଏବଂ ୨୦୦୦ ପ୍ରକାରର ଭେଷଜ ପ୍ରସ୍ତୁତ କରାଯାଏ । ଉତ୍କଟ ରୋଗ ବ୍ୟାଧିରେ (Acute abdomen pains, injury of bones and joints, burns, anal fistula, uro-lithiasis, cardiovascular disease, respiratory disease cataract) ଅକ୍ୟୁପଙ୍କଚରର ସଫଳ ପ୍ରୟୋଗ ପାରମ୍ପରିକ ଚିକିତ୍ସା ପଦ୍ଧତିର ସଫଳତାର ଆଉ ଏକ ଉଲ୍ଲେଖନୀୟ ଉଦାହରଣ । ଅକ୍ୟୁପଙ୍କଚର୍ ବର୍ତ୍ତମାନ ଆଧୁନିକ ଚିକିତ୍ସା ବିଜ୍ଞାନଦ୍ୱାରା ଅଦ୍ଭୁତ ଏବଂ ଉନ୍ନତ ଢଙ୍ଗରେ ପରୀକ୍ଷିତ ହୋଇଛି । ପାରମ୍ପରିକ ଚିକିତ୍ସାପଦ୍ଧତିକୁ ଆଧୁନିକ ବୈଜ୍ଞାନିକ ଢାଞ୍ଚାରେ ଢାଳି ଏହାର ଉତ୍କର୍ଷସାଧନ କରି ସ୍ୱାସ୍ଥ୍ୟସେବାରେ ଏହାର ଉପଯୋଗ କରିବାରେ ଚୀନ୍‌ଦେଶ ଅନ୍ୟ ଦେଶମାନଙ୍କର ଅନୁକରଣୀୟ, ଏଥିରେ ସନ୍ଦେହ ନାହିଁ ।

ଆଧୁନିକ ଚିକିତ୍ସାପଦ୍ଧତିରେ ବ୍ୟବହୃତ ଅଧିକାଂଶ ଔଷଧ ରାସାୟନିକ ଓ ସଂଶ୍ଳେଷଣ ପଦ୍ଧତିଦ୍ୱାରା ପ୍ରସ୍ତୁତ । ଏ ଧରଣର ଔଷଧର ବହୁଳ ବ୍ୟବହାର ଫଳରେ ଅବାଂଛିତ ଉପଦ୍ରବର ସୃଷ୍ଟିହୋଇଥାଏ ଏବଂ ଔଷଧଜନିତ ରାସାୟନିକ ପ୍ରଦୂଷଣ ପରିପାର୍ଶ୍ୱିକ ପ୍ରଦୂଷଣ ଉପରେ ଅଧ୍ୟାରୋପିତ ହୋଇ ଉତ୍କଟ ପ୍ରକ୍ରିୟା ସଂଘଟିତ ହୁଏ । ମାନବ ଶରୀର ଉପରେ ଅନେକ ରାସାୟନିକ ପଦାର୍ଥର ଦୀର୍ଘକାଳୀନ ପ୍ରଭାବର ଫଳାଫଳର ଆଶଙ୍କା ଅନେକ ଦେଶରେ ଚିକିତ୍ସକମାନଙ୍କୁ ଉଦ୍ଭିଜ ଭେଷଜଚିକିତ୍ସା ( phyto therapy ) ଆଡ଼କୁ କ୍ରମେ ଆକୃଷ୍ଟ କରୁଛି । କେତେକ କ୍ଷେତ୍ରରେ ଆଧୁନିକ ଚିକିତ୍ସାପଦ୍ଧତିର 'ବହ୍ୱାରମ୍ଭରେ ଲଘୁକ୍ରିୟା' ପୋଷୁଁ ଆଶାନୁରୂପ ଫଳପ୍ରଦ ହେଉନଥିବାରୁ ଏହା ପ୍ରତି ଜନସାଧାରଣଙ୍କର ବିତୃଷ୍ଣା କ୍ରମେ ବଢ଼ୁଥିବା ଲକ୍ଷ୍ୟକରାଯାଉଛି । ୟୁରୋପୀୟ ଦେଶମାନଙ୍କରେ ପୁରାତନ ଓ ପାରମ୍ପରିକ ଚିକିତ୍ସାପଦ୍ଧତି ପ୍ରତି ଜନସାଧାରଣଙ୍କର ଆଗ୍ରହ ଏବଂ ଏ ପଦ୍ଧତିର ଚିକିତ୍ସକମାନଙ୍କର ଜନପ୍ରିୟତା ସଂଖ୍ୟାବୃଦ୍ଧି ପାଉଥିବାର ଏହା ମୁଖ୍ୟ କାରଣ । ଏହି ଦେଶମାନଙ୍କରେ ଅନ୍ୟୂନ ଶହେ ପ୍ରକାର ବିକଳ୍ପ ଚିକିତ୍ସାପଦ୍ଧତି ପ୍ରତି ଲୋକେ ଆକୃଷ୍ଟ ହେଉଥିବା ବେଷ୍ଟମନ୍ଷ୍ଟ୍ର ସଂସ୍ଥାଦ୍ୱାରା ୧୯୮୩ ସାଲରେ ପ୍ରକାଶିତ ଏକ ରିପୋର୍ଟ (A visual encyclopaedia of unconventional medicine) ର ଅନୁଧ୍ୟାନରୁ ଜଣାପଡ଼େ ।

ଅଧୁନା ଏହା ସ୍ପଷ୍ଟ ସ୍ୱୀକାର କରାଯାଉଛି ଯେ ଜନସାଧାରଣଙ୍କୁ ମୌଳିକ ସ୍ୱାସ୍ଥ୍ୟସେବା ଯୋଗାଇବା ଦିଗରେ ପାରମ୍ପରିକ ଦେଶୀୟ ଚିକିତ୍ସକର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି

କରିବାକୁ ଅକ୍ଷମ । ଏ ପଦ୍ଧତିର ଚିକିତ୍ସାପଦ୍ଧତି ଅପେକ୍ଷା ସରଳ, ସୁଲଭ ଏବଂ କମ୍ ଖର୍ଚ୍ଚକାରକ ହେବାର ସମ୍ଭାବନା ଥିବାରୁ ଏହା ଗାଁଗହଳର ଜନସାଧାରଣଙ୍କ ପାଖରେ ଅଧିକ ଗ୍ରହଣୀୟ । ଏହି ପଦ୍ଧତିରେ ଚିକିତ୍ସା କରୁଥିବା ଅନେକ ଚିକିତ୍ସକ ଅଭିଜ୍ଞତାସମ୍ପନ୍ନ ଶିକ୍ଷା ଲାଭ ନକରିଥିଲେ ହେଁ ସହରରେ ତଥା ମଫସଲରେ ଚିକିତ୍ସା କରି ଅଭିଜ୍ଞତା ହାସଲ କରିଛନ୍ତି ଏବଂ ନିଜର ପରିସର ମଧ୍ୟରେ ଜନସାଧାରଣଙ୍କର ବିଶ୍ୱାସଭାଜନ ହୋଇପାରିଛନ୍ତି । ଏମାନଙ୍କୁ କିଭଳି ଭାବେ ୨୦୦୦ ଶତାବ୍ଦୀ ସୁଦ୍ଧା ଜନସାଧାରଣଙ୍କର ମୌଳିକ ସ୍ୱାସ୍ଥ୍ୟସେବାରେ ନିୟୋଜିତ କରାଯାଇପାରିବ ତାହା ହିଁ ବିଶ୍ୱସ୍ୱାସ୍ଥ୍ୟ ସଂସ୍ଥା ଗୁରୁତ୍ୱର ସହିତ ବିଚାରକରୁଛନ୍ତି ।

ଆମ ଦେଶପରି ପୃଥିବୀର ଅଧିକାଂଶ ଉନ୍ନତିକାମୀ ଦେଶମାନଙ୍କରେ ସମଗ୍ର ଜନସମାଜକୁ ମୌଳିକ ସ୍ୱାସ୍ଥ୍ୟସେବା ଏବଂ ଚିକିତ୍ସାର ସୁବିଧା ପ୍ରଦାନ କରିବା ନିମନ୍ତେ ଆବଶ୍ୟକ ସମ୍ବଳ, ତାଲିମପ୍ରାପ୍ତ କର୍ମଚାରୀ, ଭେଷଜ ଓ ଆନୁଷଙ୍ଗିକ ଉପକରଣର ଅଭାବ ରହିଛି । ଏହି ଦେଶମାନଙ୍କରେ ସାଧାରଣତଃ ଜାତୀୟ ବଜେଟର ଶତକଡ଼ା ୫ ଭାଗ ସ୍ୱାସ୍ଥ୍ୟସେବାରେ ନିୟୋଜିତ ହୁଏ ଏବଂ ଏହାର ଶତକଡ଼ା ୫୦ ଭାଗ କେବଳ ଭେଷଜ ଓ ଆନୁଷଙ୍ଗିକ ଉପକରଣ ମହଜୁଦ୍ କରିବାରେ ଖର୍ଚ୍ଚ ହୋଇଥାଏ । ଏହାକୁ ପୂରଣ କରିବାପାଇଁ ଉନ୍ନତ ଦେଶମାନଙ୍କଠାରୁ ଅତ୍ୟଧିକ ବ୍ୟୟରେ ଭେଷଜ ଓ ଅନ୍ୟାନ୍ୟ ଉପକରଣ ଆମଦାନୀ କରିବାକୁ ପଡ଼େ । ପୁନଶ୍ଚ ସ୍ୱାସ୍ଥ୍ୟସେବା ଅର୍ଥକର ଅଧିକାଂଶ ଭାଗ ସହରାଞ୍ଚଳ ଏବଂ ଅପେକ୍ଷାକୃତ ଉନ୍ନତ ଅଞ୍ଚଳମାନଙ୍କରେ ବିନିଯୋଗ ହୋଇଥାଏ । ଗାଁଗହଳର ଅଧିବାସୀ ଏଥିରୁ କାଣିଚାଏ ମାତ୍ର ଲାଭ ପାଆନ୍ତି । ଏ ସମସ୍ୟାର ସମାଧାନ କରିବାକୁ ହେଲେ ଏହି ଦେଶମାନଙ୍କୁ ନିଜର ପାରମ୍ପରିକ ଚିକିତ୍ସାପଦ୍ଧତିର ପୁନରୁତ୍ଥାନ ତଥା ଦେଶୀୟ ଭେଷଜ ଓ ଉପକରଣର ଅଧିକ ବିକାଶ ଓ ଉତ୍ପାଦନ ବୃଦ୍ଧି କରିବାକୁ ପଡ଼ିବ । ୧୯୭୫ ସାଲରେ ବିଶ୍ୱ ସ୍ୱାସ୍ଥ୍ୟସଂସ୍ଥା ଓ ବିଶ୍ୱ-ଶିଶୁ ଜାତିସଂଘର ୟୁନିସେଫ୍ ସଂସ୍ଥାର ଆନୁକୂଲ୍ୟରେ ଗଠିତ ସ୍ୱାସ୍ଥ୍ୟନୀତି ସମ୍ବନ୍ଧୀୟ କମିଟି (WHO, UNICEF Joint Committee of Health Policy) ନିଜର ରିପୋର୍ଟରେ ଉନ୍ନତିକାମୀ ଦେଶମାନଙ୍କୁ ଏ ଦିଗରେ ଉଦ୍ୟମ କରିବା ନିମନ୍ତେ ଉପଦେଶ ଓ ପ୍ରେରଣା ଦେଇଛନ୍ତି । ଆମ ଦେଶକୁ ନିଜର ସ୍ୱାସ୍ଥ୍ୟସେବା କ୍ଷେତ୍ରରେ ସ୍ୱାବଲମ୍ବୀ କରିବାକୁହେଲେ ଏବଂ ଆମର ଅସଂଖ୍ୟ ଗାଁଗହଳର ଜନସାଧାରଣଙ୍କୁ ମୌଳିକ ସ୍ୱାସ୍ଥ୍ୟସେବା ପହଞ୍ଚାଇବା ନିମନ୍ତେ ଆମକୁ ଏହି ପନ୍ଥା ଅନୁସରଣ କରି ଦେଶୀୟ ଚିକିତ୍ସାପଦ୍ଧତି ଓ ଭେଷଜର ବିକାଶ ଓ ବ୍ୟାପକ ନିୟୋଜନ କରିବାକୁ ହେବ, ଏଥିରେ ସନ୍ଦେହ ନାହିଁ ।

---

# ପରିବାର କଲ୍ୟାଣ କାର୍ଯ୍ୟକ୍ରମ

[ ସମଗ୍ର ଅଷ୍ଟ୍ରେଲିଆରେ ଯେତିକି ଲୋକ ଆମ ଦେଶରେ ବର୍ଷକୁ ସେତିକି ଶିଶୁ ଜନ୍ମ ନେଉଛନ୍ତି । ସେମାନେ ଖାଇବେ କ'ଣ, ରହିବେ କେଉଁଠି ତାଙ୍କୁ ରୋଗ ହେଲେ ଭଲ କରିବାକୁ ଡାକ୍ତର କାହାନ୍ତି ? ସେ ଚିନ୍ତା ବୋଝ ହେଇ ଆମ ମୁଣ୍ଡ ନୁଆଁଇ ଦେଉଛି । ଏଥିପାଇଁ ଦରକାର ପରିବାର କଲ୍ୟାଣ କାର୍ଯ୍ୟକ୍ରମ । ]

ନଷ୍ଟ ମୋର ପଡ଼ୋଶୀ । ବୟସରେ ମୋ'ଠାରୁ ବୋଧହୁଏ ସାନ—୩୫-୩୬ ହେବ । ତା'ର ବଡ଼ଝିଅ କେବେଠୁଁ ମଲେଣି । ବାପା, ମା' ନ ଚିହ୍ନିଲା ଦିନ ହେଲା ଗଲେଣି । ପ୍ରାୟ ୮ ବର୍ଷ ହେବ ସେ ବାହାହେଲାଣି । ପିଲାପିଲି ୭ଟି । ଏବେ ପୁଣି ସ୍ତ୍ରୀର ୭ ମାସର ଗର୍ଭ । ଓଡ଼ିଶାନଗରର ବସ୍ତିର ଠେଠବର୍ଷ । ଘରର ପରିସ୍ଥିତି କହିଲେ ଭଲ । ଟଟସ ସାହିର ପୁରୁଣା ବାଉଁଦା । ବାପା ଅଜା ଅମଳର ୨୦ ବର୍ଷର କୁସୁମର ଅଛି ବୋଲି ପିଲାଏ ମୁଣ୍ଡ ଗୁଞ୍ଜିଛନ୍ତି । ଘର ଉପର କରିବାକୁ ବସ୍ତୁ ସକ୍ଷମ ନୁହେଁ । ରୋଜଗାର ପନ୍ଥା କହୁନାହିଁ ନମ୍ବା ରୋଜଗାର କରିବାକୁ ଇଚ୍ଛା ମଧ୍ୟ ନାହିଁ । ସବୁବେଳେ ମଦପିଇ ମାତାଲ । ଘରକଥା କିଛି ବୁଝେନାହିଁ । ପିଲାଙ୍କୁଆଡ଼ ଚଳା ଛଡ଼ା ତା' ସ୍ତ୍ରୀର । କ'ଣ କରିବ ? ଫଟାକପାଳ । ଦୁଇ ବର୍ଷ ପରରୁ ବଡ଼ୁଏ ଜଣେ ଶକ୍ତାବାଳକୁ ଭଡ଼ା ଦେଇଛି । ମାସକୁ ଘରଭଡ଼ା ୮୦ ଟଙ୍କା ପାଏ । ବାହାରେ ସ୍ତ୍ରୀ' ତା' ଘରେ ବାସନ ମାଜି, ଜାମଧୁଆ କରି ପିଲାଙ୍କୁ ବଞ୍ଚେଇ ରଖିଛି । ପିଲାଙ୍କୁ ଚଳେଇବ—ପୁଣି ସ୍ୱାମୀର ମଦଖର୍ଚ୍ଚ ବି ଯୋଗାଇବ—ନହେଲେ ତା' ଉପରେ ଅତ୍ୟାଚାର । ସବୁବେଳେ ପିଲାଙ୍କ ଘରେ ଘୋଷାଡ଼ହୋଇ, ପରଘରେ ଫଟିଫଟି ମାଡ଼ଖିଆ ଅଶାନ୍ତ ଭିତରେ ସ୍ତ୍ରୀର ଦେହରେ ଖାଲି ଚମ ଆଉ ହାଡ଼ । ପେଟପୁରା ଓଳିଏ ଖାଇବାକୁ ପାଏନି—ଔଷଧ ତ ଦୂରର କଥା ।

ଘରେ ତା'ର ଯେମିତି ସବୁପାକ ରୋଗ ବସାବାନ୍ଧିଛନ୍ତି । ସବୁ ପିଲାଙ୍କ ଦେହରେ କୁଣ୍ଡିଆ, ପେଟରେ କେଞ୍ଚୁଆ, ଆଉ ସବୁବେଳେ କାଶ, ସର୍ଦ୍ଦି ଲାଗିରହିଛି । ୫ ବର୍ଷର ନୁଁଆଟିଏ ଗତ ଦୁଇବର୍ଷ ହେଲାଣି ପୋଲିଓ ବେମାରୀରେ ଚାଲବୁଲି କରିପାରୁନାହିଁ । ନିଜପାଇଁ ଓ ପିଲାଙ୍କ ଦେହମୁଣ୍ଡ ପାଇଁ ସବୁବେଳେ ନଷ୍ଟ-ସ୍ତ୍ରୀ ମୋର ଦ୍ୱାରସ୍ଥ । ବହୁତ ବୁଝାଇଲି ସ୍ତ୍ରୀକୁ ତା'ର—"ନଷ୍ଟ ତ ଶୁଣିବା ଅବସ୍ଥାରେ ନାହିଁ—ତମେ ପରିବାର ନିୟନ୍ତ୍ରଣ ଅପରେସନ ହୋଇଯାଅ—ନହେଲେ ଏ ଦୁଃଖ ବଢ଼ିଚାଲିବ ।" ସେ କାନ୍ଦି କାନ୍ଦି କହିଲା, "ବାବୁ, ସ୍ୱା ବାପା ପୁଅକୁ ଦେଖାଇ କହୁଛି ଅପରେସନ ହେଲେ ମାରିଦେବ । ମୋର ଉପାୟ ନାହିଁ ।" ଦୁଃଖ ଲାଗିଲା—ଭାବିଲି ଏ କେଉଁ ଆମ ସମାଜ ! ଅଜ୍ଞତା ହିଁ ଦୁଃଖର କାରଣ—ଆଉ କିଛି ନୁହେଁ ।

ମୋ ସୁଦୀର୍ଘକାଳର ପ୍ରଥମ ଦୁଇବର୍ଷ ପରିବାର କଲ୍ୟାଣ କ୍ଷେତ୍ରରେ ବିତାଇଛି । ବଡ଼ ପରିବାରର ଶିକାର ହୋଇ ଦୁଃସ୍ଥ ଅର୍ଥିକ ପରିସ୍ଥିତି ଭିତରେ ରୋଗ, ଦ୍ୱେଷ, ଶୋକ, ଅଜ୍ଞତା, ଅପମୃତ୍ୟୁ ଓ ଅକାଳ ମୃତ୍ୟୁରେ ସନ୍ତ୍ରସ୍ତ ହୋଇ ମଧ୍ୟ ଶ୍ରେଷ୍ଠପରିବାରର ଦାବିରୁ ଓହରିଣ ନ ଆସିବାର ଦୃଷ୍ଟାନ୍ତ ଅନେକ ଦେଖିଛି ।

ଆଗେ ପରିସ୍ଥିତି ଥିଲା ଭିନ୍ନ । ପୁରୁ ଥିଲା ଶସ୍ତା । ବୃଦ୍ଧୀ ଆମମାନଙ୍କଠାରୁ ଯେମେ ଶୁଣିଛେ ବଜାର ଦର କ'ଣ ଥିଲା । ଗୋଟିଏ ଟଙ୍କାରେ ୫ ଭରଣ ଧାନ । ବେଲାଏ ମୁଢ଼ିର ଦାମ୍ ପଇସାଏ । ଟଙ୍କାକର ପରିସରବା ମୋଟାଏ ବଡ଼ ପରିବାର ଚଳେଇପାରେ ପୁଣି ବଳି- ପଡ଼ୁଥିଲା । ଅଳ୍ପ ଟଙ୍କା ରୋଜଗାରରେ ନିଜେ ଚଳି, ନିଜର ପରିବାର ଚଳି, କିଛି ସଞ୍ଚୟ କରିହେଉଥିଲା । ସେତେବେଳେ ବଡ଼ପରିବାର ଓ ଅନେକ ସନ୍ତାନର ପିତାମାତା ହୋଇ ଲୋକେ ଗର୍ବ ଅନୁଭବ କରୁଥିଲେ । ଅଜିର ଦରଦାମ୍ ଆକାଶକୁ ଛୁଇଁଲାଣି । ବହୁତ ୮୦୦/୯୦୦ ଟଙ୍କା ଦରମା ପାଉଥିବା ମଧ୍ୟବିତ୍ତ ଲୋକଙ୍କୁ ୩ ହଜାର ଟଙ୍କା ଦରମା ପାଉଥିବା ଲୋକେ ମଧ୍ୟ ଭଲରେ ଚଳିବା କଷ୍ଟକର—ସଞ୍ଚୟ କରିବା ତ ଦୂରର କଥା । ପୁଣି ଗୋଟିଏ ଜନମଙ୍ଗଳକାରୀ ରାଷ୍ଟ୍ରର ନାଗରିକ ହିସାବରେ ଲୋକଙ୍କ ପାଖରେ ସରକାରଙ୍କର ସମସ୍ତ ସୁସ୍ଥ ସେବା ପହଞ୍ଚୁଛି । ଏହାଦ୍ୱାରା ବସନ୍ତରୋଗ ପରି ନାନାପ୍ରକାର ରୋଗକୁ ସମାଜରୁ ଦୂର କରାଯାଇ ଶିଶୁମାନଙ୍କର ମୃତ୍ୟୁହାରକୁ ଯଥେଷ୍ଟ କମାଇଦିଆଯାଇ- ପାରିଛି ଓ ତତ୍‌ସଙ୍ଗେ ବଞ୍ଚିରହିବାର ବୟସ ସୀମା ମଧ୍ୟ ବଢ଼ିଯାଇଛି ।

ଏପରି ପରିସ୍ଥିତିରେ ବିଭିନ୍ନ ଗର୍ଭ-ନିରୋଧକ ବ୍ୟବସ୍ଥାମାନ ଅବଲମ୍ବନ କରି ନିଜନିଜର ପରିବାରକୁ ସୀମିତ କରିବାର ଗୁରୁତ୍ୱ ସମସ୍ତେ ଉପଲବ୍ଧି କରିବା ଉଚିତ ।

**ଗର୍ଭ-ନିରୋଧ ପଦ୍ଧତିର ପ୍ରାକ୍ ଇତିହାସ—**

ମାନବ ସମାଜର ଉତ୍ପତ୍ତି ଦିନଠାରୁ ଜନ୍ମନିୟନ୍ତ୍ରଣ ପଦ୍ଧତିର ଇତିହାସ ସୃଷ୍ଟି । ଏହି ଧରିତ୍ରୀରେ ପ୍ରାଚୀନ କାଳରେ ଜନସଂଖ୍ୟା ଅତି କମ୍ ଥିଲା ଏକଥା ସତ । କିନ୍ତୁ ଏକଥା ମଧ୍ୟ ସତ ଯେ ନିଜପାଇଁ ଖାଦ୍ୟ ଯୋଗାଡ଼ କରିବାର ଶକ୍ତି ଓ ସୁବିଧା ମଧ୍ୟ ସୀମିତ ଥିଲା । ଖାଦ୍ୟ ଓ ବାସସ୍ଥଳୀର ଅଭାବଯୋଗୁଁ ଅନେକ ପ୍ରାଚୀନ ଅଦିବାସୀ ଶ୍ରେଣୀର ଲୋକ ମଧ୍ୟ ସେମାନଙ୍କ ପରିବାରର ଆକାରକୁ ସୀମିତ ରଖୁଥିଲେ । ଗର୍ଭପାତ ଓ ଶିଶୁହତ୍ୟା ଏପରିକି ମଦ, ହତ୍ୟାପ୍ରଥା ଇତ୍ୟାଦି ଜନସଂଖ୍ୟା ନିୟନ୍ତ୍ରଣର ବିଭିନ୍ନ ପନ୍ଥା ହିସାବରେ ଗୃହୀତ ହେଉଥିବାର ପ୍ରମାଣ ରହିଛି । ଆଦିମ ସମାଜର ସ୍ତ୍ରୀମାନେ ଗର୍ଭନିରୋଧ ଉଦ୍ଦେଶ୍ୟରେ ବିଭିନ୍ନ ଚେର ପତ୍ର ଚେରମୂଳ ଇତ୍ୟାଦି ବ୍ୟବହାର କରୁଥିଲେ । ପୁରୁଷର ଔରସରେ ଥିବା ଶୁକ୍ରାଣୁ ନଷ୍ଟକରିଦେବାପାଇଁ ଦକ୍ଷିଣ ଆମେରିକାର ଆଦିମ ସମାଜରେ ଲେମ୍ବୁରସରେ ତିଆରି ଏକପ୍ରକାର ଦ୍ରବଣ ଏବଂ ସ୍ପଞ୍ଜରେ ଅଫିମ ଏବଂ ଟାନିକ ଏସିଡ଼ରୁ ତିଆରି ଔଷଧମାନ ସ୍ତ୍ରୀ-ଯୋନିରେ ବ୍ୟବହୃତ ହେଉଥିବାର ପ୍ରମାଣ ଅଛି । ଅଷ୍ଟ୍ରେଲିଆର ଏକ ଦ୍ୱୀପର ଆଦିମ ଅଧିବାସୀମାନେ 'ମାଇକା' ବା 'କୁଲ୍‌ଚି' ନାମକ ଏକପ୍ରକାର ଅସ୍ତ୍ରୋପଚାର

କରୁଥିବାର ଜଣାଯାଏ । ଏହାଦ୍ୱାରା ପୁରୁଷର ମୂତ୍ରଦ୍ୱାରକୁ ପଥର ନିର୍ମିତ ଏକ ଝଷ୍ଟ ଅସ୍ତ୍ର ସାହାଯ୍ୟରେ କାଟିଦିଆଯାଉଥିଲା । ଫଳରେ ସ୍ତ୍ରୀ ସହବାସ ସମୟରେ ପୁରୁଷର ବୀର୍ଯ୍ୟ ସ୍ତ୍ରୀ-ଯୌନାଙ୍ଗ ମଧ୍ୟରେ ପ୍ରବେଶ ନକରି ବାହାରେ ନିର୍ଗତ ହେଉଥିଲା ।

ଆମ ଭାରତବର୍ଷ କଥା ବାଦ୍ ଯାଉନାହିଁ ! ଆଜକୁ ପ୍ରାୟ ୨୦୦୦ ବର୍ଷ ତଳେ ଜନ୍ମନିୟନ୍ତ୍ରଣ ବ୍ୟବସ୍ଥା ପ୍ରଚଳିତ ଥିବାର ଲିପିବଦ୍ଧ ହୋଇଛି । ପ୍ରାଚୀନ ଭାରତର ପ୍ରସିଦ୍ଧ ବୈଦ୍ୟ ବଣେଶଙ୍କ 'ଚରକ' ଯୀଶୁଖ୍ରୀଷ୍ଟ ଜନ୍ମହେବାର ଏକଶତ ବର୍ଷ ପୂର୍ବରୁ ଅନେକ ପ୍ରକାରର ଗର୍ଭନିରୋଧ ବ୍ୟବସ୍ଥା ଲିପିବଦ୍ଧ କରିଯାଇଛନ୍ତି । ଖ୍ରୀଷ୍ଟପର ୪ର୍ଥ ଶତାବ୍ଦୀର ପ୍ରଥମ ଭାଗରେ 'ବାତ୍ସାୟନ' ଲିଖିତ 'କାମସୂତ୍ର', ଦ୍ୱାଦଶ ଶତାବ୍ଦୀରେ ଲିଖିତ 'ରତି-ରହସ୍ୟ', ତ୍ରୟୋଦଶ ଶତାବ୍ଦୀରେ ଭାନୁପଦଙ୍କ ଲିଖିତ 'ଜୟମଙ୍ଗଳା'ରେ ଅନେକ ପ୍ରକାର ଗର୍ଭନିରୋଧ ବ୍ୟବସ୍ଥା ଲିପିବଦ୍ଧ ହୋଇଛି । ଏଥିମଧ୍ୟରେ ବିଭିନ୍ନ ଗଛର ଫଳ, ପତ୍ର ଓ ଚେର ମୂଳ ଖାଇବା ପାଇଁ ଉପଦେଶ ଦିଆଯାଇଛି; ଯଥା—କଦମ୍ବ ଗଛର ଫଳ, ଜଳ ପଦ୍ମର ମଞ୍ଜି, ପଳାଶ ଫଳ, ତାଳପତ୍ର ଇତ୍ୟାଦି ।

**ବିଂଶ ଶତାବ୍ଦୀରେ ଭାରତରେ ଗର୍ଭନିରୋଧ ବ୍ୟବସ୍ଥା—**

ଜନ୍ମନିୟନ୍ତ୍ରଣ ବ୍ୟବସ୍ଥା ଭାରତବର୍ଷରେ ଦୀର୍ଘ ୭୦ ବର୍ଷ ହେଲା ପ୍ରଚଳିତ ହୋଇଆସୁଛି । ପ୍ୟାରେ କିଷନ ଓ୍ୟାଟଲ୍ ୧୯୧୬ ମସିହାରେ 'ଭାରତରେ ଜନସଂଖ୍ୟା ସମସ୍ୟା' ନାମକ ଏକ ପୁସ୍ତକ ପ୍ରକାଶ କରିଥିଲେ । ପ୍ରଫେସର ରଘୁନାଥ ଧୋଣ୍ଡୋ କାର୍ଭେ ୧୯୨୫ ମସିହାରେ ବମ୍ବେରେ ଜନ୍ମନିୟନ୍ତ୍ରଣ କ୍ଲିନିକ୍ ଆରମ୍ଭ କରିଥିଲେ । ପୃଥିବୀର ପ୍ରଥମ ସରକାରୀ ଜନ୍ମନିୟନ୍ତ୍ରଣ କ୍ଲିନିକ୍ ମହୀଶୂରରେ ୧୯୩୦ ମସିହାରେ ଖୋଲାଯାଇଥିଲା ଏବଂ ପରେ ପରେ ମାଡ୍ରାଜ ସରକାର ଜନ୍ମନିୟନ୍ତ୍ରଣ ବ୍ୟବସ୍ଥାକୁ ଅନୁମୋଦନ କରିଥିଲେ । ଭାରତୀୟ ଜାତୀୟ କଂଗ୍ରେସ ୧୯୩୫ ମସିହାରେ ଜାତୀୟ ଯୋଜନା କମିଟି ମାଧ୍ୟମରେ ଜନ୍ମନିୟନ୍ତ୍ରଣକୁ ସମର୍ଥନ ଦେଇଥିଲେ । ପରବର୍ତ୍ତୀ ଆମେରିକାର ଜନ୍ମନିୟନ୍ତ୍ରଣ ଆନ୍ଦୋଳନର ମୁଖ୍ୟ ପୁରୋଧା 'ମାର୍ଗାରେଟ୍ ସାଙ୍ଗର' ଭାରତ ପରିଦର୍ଶନରେ ଆସିଥିଲେ ଏବଂ ଭାରତରେ ଏହି ଆନ୍ଦୋଳନକୁ କ୍ଷିପ୍ରତର କରିଥିଲେ । ଜନ୍ମନିୟନ୍ତ୍ରଣ ବ୍ୟବସ୍ଥାକୁ ଲୋକପ୍ରିୟ କରାଇବାରେ ଡାକ୍ତର ଏ. ପି. ପିଲାଇଙ୍କ ନାମ ଉଲ୍ଲେଖଯୋଗ୍ୟ । ୧୯୩୬ ମସିହାରେ ସେ ଏ ବିଷୟରେ ଅନେକ ତାଲିମ ପାଠ୍ୟକ୍ରମ ପ୍ରବର୍ତ୍ତନ କରାଇଥିଲେ । ୧୯୪୦ ମସିହାରେ ଲଣ୍ଡନର 'ପରିବାର ନିୟନ୍ତ୍ରଣ ସଂଘ' ତରଫରୁ କେତେକ ପ୍ରତିନିଧି ଜନ୍ମନିୟନ୍ତ୍ରଣ ବ୍ୟବସ୍ଥାକୁ ପ୍ରସାର କରାଇବାପାଇଁ ଭାରତ ପରିଦର୍ଶନରେ ଆସିଥିଲେ । ଭାରତ ସରକାରଙ୍କ ଦ୍ୱାରା ନିଯୁକ୍ତ 'ଭୋର କମିଟି' ୧୯୪୬ ମସିହାରେ ଦାଖଲ କରିଥିବା ତାଙ୍କର ରିପୋର୍ଟରେ ଜନ୍ମନିୟନ୍ତ୍ରଣ ସେବାକୁ ସ୍ୱାସ୍ଥ୍ୟ ଦୃଷ୍ଟିରୁ ଗ୍ରହଣ କରିନେବା ପାଇଁ ସରକାରଙ୍କ ନିକଟରେ ଦୃଢ଼ ସୂତ୍ର ବାନ୍ଧିଥିଲେ । ୧୯୪୯ ମସିହାରେ 'ଭାରତୀୟ ପରିବାର ନିୟନ୍ତ୍ରଣ ସଂଘ' ଶ୍ରୀମତୀ ଧନବନ୍ତୀ ରାମାରାଓଙ୍କ ଅଧ୍ୟକ୍ଷତାରେ ପ୍ରତିଷ୍ଠିତ ହୋଇଥିଲା । ଆଜି ଭାରତରେ ସର୍ବବୃହତ୍ ବେସରକାରୀ ସଂସ୍ଥାଭାବରେ ଏହି ଅନୁଷ୍ଠାନ ପରିବାର ନିୟନ୍ତ୍ରଣ କ୍ଷେତ୍ରରେ କାର୍ଯ୍ୟ କରିଆସୁଛି ।

ପ୍ରଥମ ପଞ୍ଚବାର୍ଷିକ ଯୋଜନାର ଆରମ୍ଭରେ ୧୯୫୧ ମସିହାରେ ଯୋଜନା କମିଶନ ଭାରତରେ ଜନସଂଖ୍ୟା ବୃଦ୍ଧିକୁ ଅନୁଧ୍ୟାନ କରିବାପାଇଁ ଏବଂ ଗର୍ଭନିରୋଧ ବ୍ୟବସ୍ଥା ଗୁଡ଼ିକର ଗ୍ରହଣଯୋଗ୍ୟତା ବିଷୟରେ ଅନୁଧ୍ୟାନ କରିବାପାଇଁ ଏକ କମିଟି ନିଯୁକ୍ତ କରିଥିଲେ । ଏହି କମିଟି ୧୯୫୩ ମସିହାରେ ତାଙ୍କ ରିପୋର୍ଟରେ ପରିବାର କଲ୍ୟାଣ କାର୍ଯ୍ୟକ୍ରମର ଅଂଶବିଶେଷ ରୂପେ ଜନ୍ମନିୟନ୍ତ୍ରଣ କାର୍ଯ୍ୟକ୍ରମକୁ ଗ୍ରହଣ କରିବାପାଇଁ ସୁପାରିଶ କରିଥିଲେ । ଏହାପରେ ପରିବାର ନିୟନ୍ତ୍ରଣ କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରାଇବାର ପଦ୍ଧତି ନିର୍ଦ୍ଧାରଣରେ ପ୍ରଥମ ପଞ୍ଚବାର୍ଷିକ ଯୋଜନାଟି ବିତିଯାଇଥିଲା । ୧୯୫୫ ମସିହାରେ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାକାଳରେ ଭାରତ ସରକାର ଜଣେ ପରିବାର ନିୟନ୍ତ୍ରଣ ନିର୍ଦ୍ଦେଶକ ନିଯୁକ୍ତ କରିଥିଲେ । ସେହିପରି ବିଭିନ୍ନ ପ୍ରଦେଶରେ ପରିବାର ନିୟନ୍ତ୍ରଣ ଅଫିସରମାନେ ନିଯୁକ୍ତ ହୋଇଥିଲେ । ପରିବାର ନିୟନ୍ତ୍ରଣକୁ ଏକ ଜାତୀୟ କାର୍ଯ୍ୟକ୍ରମ ଭାବରେ ଗ୍ରହଣ କରାଯାଇ ଗର୍ଭନିରୋଧ ବ୍ୟବସ୍ଥାଗୁଡ଼ିକୁ ଲୋକପ୍ରିୟ କରାଇ ବିଭିନ୍ନ କେନ୍ଦ୍ର ଜରିଆରେ ପରିବାର ନିୟନ୍ତ୍ରଣ ସେବା ଯୋଗାଇଦେବା, କର୍ମଚାରୀମାନଙ୍କୁ ତାଲିମଦେବା ଓ ଏ ଦିଗରେ ଗବେଷଣା ଓ ମୂଲ୍ୟାୟନ ଦିଗରେ ବ୍ୟାପକ କାର୍ଯ୍ୟକ୍ରମ ଗ୍ରହଣ କରାଗଲା । ଏ ଦିଗରେ ରାଜ୍ୟଗୁଡ଼ିକୁ କେନ୍ଦ୍ର ତରଫରୁ ଯଥେଷ୍ଟ ଅର୍ଥ ସାହାଯ୍ୟର ବ୍ୟବସ୍ଥା ମଧ୍ୟ କରାଗଲା । ତୃତୀୟ ପଞ୍ଚବାର୍ଷିକ ଯୋଜନାକାଳ ମଧ୍ୟରେ ଯଥାଶୀଘ୍ର ଜନ୍ମହାର ଏକହଜାରରେ ୨୫କୁ କମାଇଦେବାର ଲକ୍ଷ୍ୟରଖି ଏକ ବ୍ୟାପକ କାର୍ଯ୍ୟକ୍ରମ ଗ୍ରହଣ କରାଗଲା । ୧୯୬୩ ମସିହାରେ ସମଗ୍ର ପରିବାର ନିୟନ୍ତ୍ରଣ କାର୍ଯ୍ୟକ୍ରମର ଏକ ବ୍ୟାପକ ପୁନର୍ବିନ୍ୟାସ କରାଯାଇ ଏକ ପରିବର୍ଦ୍ଧିତ କାର୍ଯ୍ୟକ୍ରମ ସାରାଦେଶରେ ପ୍ରବର୍ତ୍ତିତ ହେଲା । କେନ୍ଦ୍ରରେ ଏକ 'କ୍ୟାବିନେଟ କମିଟି' ଏବଂ ଏକ କେନ୍ଦ୍ରୀୟ ପରିବାର ନିୟନ୍ତ୍ରଣ ପରିଷଦ ଗଠିତ ହେଲା ଓ ଏକ ପରିବାର ନିୟନ୍ତ୍ରଣ କମିଶନର ପଦ ସୃଷ୍ଟି କରାଗଲା । ରାଜ୍ୟଗୁଡ଼ିକରେ ରାଜ୍ୟ ପରିବାର ନିୟନ୍ତ୍ରଣ ପରିଷଦ ସୃଷ୍ଟି କରାଗଲା ଓ ରାଜ୍ୟ ପରିବାର ନିୟନ୍ତ୍ରଣ ଅଫିସରପଦ ସୃଷ୍ଟିହେଲା ।

୧୯୬୫ ମସିହାର ମଧ୍ୟଭାଗରେ ସାରା ଭାରତବର୍ଷରେ ୧୫ ହଜାରରୁ ଅଧିକ ପରିବାର ନିୟନ୍ତ୍ରଣ କେନ୍ଦ୍ର ସ୍ଥାପିତ ହୋଇଥିଲା । ତନ୍ମଧ୍ୟରୁ ପ୍ରାୟ ୧୪ ହଜାର କେନ୍ଦ୍ର ଗ୍ରାମାଞ୍ଚଳରେ ଅବସ୍ଥିତ ଥିଲା । ସରକାରୀ ନିୟନ୍ତ୍ରଣରେ ପରିଚାଳିତ ଭାରତୀୟ ପରିବାର ନିୟନ୍ତ୍ରଣ କାର୍ଯ୍ୟକ୍ରମ ପୃଥିବୀରେ ସର୍ବବୃହତ୍ । ଅଧିକରୁ ଅଧିକ ଅର୍ଥ ଏ ଦିଗରେ ଖର୍ଚ୍ଚ କରାଗଲା । ପ୍ରଥମ ପଞ୍ଚବାର୍ଷିକ ଯୋଜନାରେ .୪୫ ନିୟୁତ ଟଙ୍କା ଖର୍ଚ୍ଚ କରାଗଲା । ୨ୟ ପଞ୍ଚବାର୍ଷିକ ଯୋଜନାରେ ୨୧.୪୫ ନିୟୁତ ଟଙ୍କା, ୩ୟ ପଞ୍ଚବାର୍ଷିକ ଯୋଜନାରେ ୨୪୮.୬୦ ନିୟୁତ ଟଙ୍କା ଓ ୪ର୍ଥ ପଞ୍ଚବାର୍ଷିକ ଯୋଜନାରେ ୨୪୮୮.୩୦ ନିୟୁତ ଟଙ୍କା ବ୍ୟୟବରାଦ କରାଗଲା । ପରିବାର ନିୟନ୍ତ୍ରଣ କାର୍ଯ୍ୟକ୍ରମର ବ୍ୟାପକତା ଏହି ବ୍ୟୟବରାଦରୁ ହିଁ ଅନୁମିତ ହୁଏ ।

୧୯୬୬ ମସିହା ଅପ୍ରେଲ ମାସରେ ପରିବାର ନିୟନ୍ତ୍ରଣ ପାଇଁ ଏକ ସ୍ୱତନ୍ତ୍ର ବିଭାଗ କେନ୍ଦ୍ରରେ ଖୋଲାଗଲା । ଏହି ବିଭାଗରେ ମୁଖ୍ୟ ହିସାବରେ ଜଣେ କମିଶନର ରହିଲେ । ଦେଶର ବିଭିନ୍ନ ଅଞ୍ଚଳରେ ୬ଟି ଆଞ୍ଚଳିକ କେନ୍ଦ୍ର ଜଣେ ଜଣେ ଆଞ୍ଚଳିକ ନିର୍ଦ୍ଦେଶକଙ୍କ

ଅଧୀନରେ ସୃଷ୍ଟି ହେଲା । ରାଜ୍ୟସ୍ତରରେ ଗୋଟିଏ ଲେଖାଏଁ ରାଜ୍ୟ ପରିବାର ନିୟନ୍ତ୍ରଣ ସଂସ୍ଥା ସୃଷ୍ଟିହେଲା । ଜଣେ 'ରାଜ୍ୟ ପରିବାର ନିୟନ୍ତ୍ରଣ ଅଫିସର' ଏହି ସଂସ୍ଥାର ଦାୟିତ୍ୱରେ ରହିଲେ । ଜିଲ୍ଲାସ୍ତରରେ ଜିଲ୍ଲା ପରିବାର ନିୟନ୍ତ୍ରଣ ସଂସ୍ଥା ସୃଷ୍ଟିହେଲା ଓ ଜଣେ ଲେଖାଏଁ ଜିଲ୍ଲା ପରିବାର ନିୟନ୍ତ୍ରଣ ଅଫିସର ଏହାର ଦାୟିତ୍ୱରେ ରହିଲେ । ଗ୍ରାମାଞ୍ଚଳରେ ସ୍ୱାସ୍ଥ୍ୟକେନ୍ଦ୍ରଗୁଡ଼ିକ ପ୍ରଧାନତଃ ଗ୍ରାମ୍ୟ ପରିବାର କଲ୍ୟାଣ କେନ୍ଦ୍ର ରୂପେ କାର୍ଯ୍ୟକଲେ ଓ ପ୍ରତ୍ୟେକ ସ୍ୱାସ୍ଥ୍ୟକେନ୍ଦ୍ର ଅଧୀନରେ କେତୋଟି ସ୍ୱାସ୍ଥ୍ୟ ଉପକେନ୍ଦ୍ର ରହିଲା । ଗତ କେତେ ବର୍ଷ ହେଲା ଆମ ଧଳାସରକାର ରାଜ୍ୟରେ ଗୋଟିଏ ପରିବାର ନିୟନ୍ତ୍ରଣ ନିର୍ଦ୍ଦେଶକ ପଦ ସୃଷ୍ଟିକରି ଏହି କାର୍ଯ୍ୟକ୍ରମକୁ ବ୍ୟାପକତର କରିଛନ୍ତି ।

## ଭାରତରେ ଜନସଂଖ୍ୟା ବୃଦ୍ଧି—

୧୮୭୨ ମସିହାରେ ଭାରତବର୍ଷରେ ପ୍ରଥମ ଜନଗଣନା ହୋଇଥିଲା । ତା'ପରେ ପ୍ରତ୍ୟେକ ଦଶବର୍ଷରେ ଥରେ ଲେଖାଏଁ ଜନଗଣନା ହୋଇଆସୁଛି । ଶେଷ ଜନଗଣନା ୧୯୮୧ରେ ହୋଇଥିଲା । ଏଥିରୁ ଜଣାଯାଏ ଯେ ୧୯୨୧ ମସିହା ପର୍ଯ୍ୟନ୍ତ ଜନସଂଖ୍ୟା ମନ୍ଥର ଗତିରେ ବୃଦ୍ଧି ପାଉଥିଲା । ତା'ପରେ ଜନସଂଖ୍ୟା ଦ୍ରୁତଗତିରେ ବୃଦ୍ଧି ପାଇବାରେ ଲାଗିଛି । ୧୯୭୧ ମସିହା ଜନଗଣନାରୁ ଜଣାଯାଏ ଯେ ଜନସଂଖ୍ୟା ହାରାହାରି (୨.୧୭% ବାର୍ଷିକ) ପ୍ରତିବର୍ଷ ଏକଶହ ଲୋକସଂଖ୍ୟାରେ ୨.୧୭ ହାରରେ ବୃଦ୍ଧି ପାଉଛି । ବର୍ତ୍ତମାନ ଜନସଂଖ୍ୟା ଦୃଷ୍ଟିରୁ ପୃଥିବୀରେ ଭାରତର ସ୍ଥାନ ଦ୍ୱିତୀୟ ଏବଂ ଲୋକସଂଖ୍ୟା ବର୍ତ୍ତମାନ ଭାରତରେ ଜ୍ୟାମିତିକ ହାରରେ ବଢ଼ିଚାଲିଛି । ପ୍ରତ୍ୟେକ ଦେଢ଼ ସେକେଣ୍ଡରେ ଜଣେ ଲେଖାଏଁ ଭାରତୀୟ ନାଗରିକ ଏ ଦେଶର ଭୂମିରେ ଜନ୍ମଗ୍ରହଣ କରିବା ଫଳରେ ଖାଦ୍ୟ ଯୋଗାଣ, ବାସଗୃହ ଯୋଗାଣ, ବସ୍ତ୍ରଯୋଗାଣ, ଶିକ୍ଷା, ସ୍ୱାସ୍ଥ୍ୟ ଓ କର୍ମନିଯୁକ୍ତି କ୍ଷେତ୍ରରେ ବ୍ୟାପକ ଅଭାବ ସୃଷ୍ଟି ହୋଇଛି । ଆକାର ଦୃଷ୍ଟିରୁ ଭାରତବର୍ଷ ଅଷ୍ଟ୍ରେଲିଆ ମହାଦେଶର ପ୍ରାୟ ଅଧାଅଧି ହୋଇଥିଲେ ମଧ୍ୟ ପ୍ରତ୍ୟେକବର୍ଷ ଲୋକସଂଖ୍ୟା ପ୍ରାୟ ୧୩ ନିୟୁତ ବଢ଼ିଚାଲିଛି— ଏହି ବର୍ତ୍ତମାନ ଲୋକସଂଖ୍ୟା ସମଗ୍ର ଅଷ୍ଟ୍ରେଲିଆର ଲୋକସଂଖ୍ୟା ସହିତ ସମାନ ।

ଜଣେ ସାଧାରଣ ଭାରତୀୟର ଆୟୁ ୧୯୪୧-୫୦ରେ ୩୧ ବର୍ଷରୁ ୧୯୬୬-୭୦ରେ ୫୨.୫ ବର୍ଷକୁ ବୃଦ୍ଧିପାଇଛି । ମୃତ୍ୟୁହାର ୧୯୫୧ରେ ଏକହଜାରରେ ୨୭.୪ରୁ ୧୯୭୧ରେ ଏକହଜାରରେ ୧୫କୁ ଖସିଆସିଛି । ଶିଶୁ ମୃତ୍ୟୁହାର ଏକହଜାରରେ ୧୮୩ (୧୯୫୬ରୁ-୬୦ରୁ ୧୧୧ (୧୯୬୬-୭୦)କୁ ଖସିଆସିଛି ।

ଯଦି ବର୍ତ୍ତମାନର ହାରରେ ଲୋକସଂଖ୍ୟା ବୃଦ୍ଧିପାଏ ତେବେ ୨୦୦୦ ଖ୍ରୀଷ୍ଟାବ୍ଦ ସୁଦ୍ଧା ଭାରତର ଜନସଂଖ୍ୟା ୧୧୨୨ ନିୟୁତରେ ପହଞ୍ଚି ଏକ ଉତ୍କଟ ଜନବିସ୍ଫୋରଣ ସମସ୍ୟା ସୃଷ୍ଟିକରିବ—ଏଥିରେ ସନ୍ଦେହ ନାହିଁ । ତେଣୁ ଆମକୁ ଶିକ୍ଷିତ ଜନସାଧାରଣ, ବୁଦ୍ଧିଜୀବୀ, ସ୍ୱେଚ୍ଛାସେବୀ ଅନୁଷ୍ଠାନ ତଥା ଯୋଜନା ସହ ସଂପୃକ୍ତ କର୍ମଚାରୀମାନେ ସତର୍କ ରହିବା ଉଚିତ ।

**ଆଇନଦୃଷ୍ଟିରେ ଗର୍ଭନିରୋଧ ପଦ୍ଧତି, ଅସ୍ତ୍ରୋପଚାର ଓ ଗର୍ଭପାତ :**

ଏହି ଶତାବ୍ଦୀର ତୃତୀୟ ଦଶକରେ ମଧ୍ୟ ଅଳ୍ପକେତେକ ଦେଶ ଗର୍ଭଧାରଣକୁ ନିୟନ୍ତ୍ରଣ କରିବାପାଇଁ ଆଇନ ପ୍ରଣୟନ କରିଥିଲେ । କିନ୍ତୁ ଊନବିଂଶ ଶତାବ୍ଦୀରେ ଅଧିକାଂଶ ଦେଶରେ ଗର୍ଭପାତ ଓ ଗର୍ଭନିରୋଧ ପଦ୍ଧତି ଅବଲମ୍ବନ କରିବା ସମାଜରେ ଏକ ଅପରାଧ ଓ ଜାତୀୟସ୍ୱାର୍ଥ ବିରୋଧୀ ବିବେଚିତ ହେଉଥିଲା ଏବଂ ଏଥିରେ ଆଇନର କୌଣସି ବ୍ୟବସ୍ଥା ନଥିଲା । ଆଇନ ପ୍ରଣୟନର କୌଣସି ଆବଶ୍ୟକତା ଉପଲବ୍ଧ କରାଯାଉନଥିଲା । କାରଣ ଜନସଂଖ୍ୟା ବୃଦ୍ଧି ଏକ ସମସ୍ୟାରୂପେ ବିବେଚିତ ହେଉନଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଜନସଂଖ୍ୟା ବୃଦ୍ଧି ଏସିଆ ଓ ଆଫ୍ରିକାରେ ନୂଆ କରି ସ୍ୱାଧୀନତା ପାଇଥିବା ଦେଶମାନଙ୍କରେ ଅର୍ଥନୈତିକ ପ୍ରଗତିରେ ବାଧାସୃଷ୍ଟିକଲା । ଫଳରେ ଏହିସବୁ ଦେଶମାନଙ୍କ ଜନ୍ମନିୟନ୍ତ୍ରଣ କାର୍ଯ୍ୟକ୍ରମ ଗ୍ରହଣ କରିବାକୁ ବାଧ୍ୟହେଲେ । ୧୯୪୮ ମସିହାରେ ଯୁଦ୍ଧପର ଜନସଂଖ୍ୟା ବୃଦ୍ଧିକୁ ରୋକିବାକୁ ଜାପାନ ତା'ର ଗର୍ଭପାତ ଆଇନକୁ କଡ଼ାକଡ଼ିଭାବେ ପାଳନରୁ ମୁକ୍ତକଲା । ୧୯୫୨ ମସିହାଠାରୁ ଭାରତ ପୃଥିବୀରେ ସର୍ବପ୍ରଥମେ ସରକାରୀଭାବେ 'ଜାତୀୟ ପରିବାର ନିୟନ୍ତ୍ରଣ କାର୍ଯ୍ୟକ୍ରମ' ଆରମ୍ଭକଲା । ଜନସଂଖ୍ୟା ବୃଦ୍ଧିକୁ ନିୟନ୍ତ୍ରଣ କରିବାର ଆବଶ୍ୟକତା ଅନେକ ଦେଶର ରାଜନୈତିକ, ସାମାଜିକ ଓ ଧର୍ମଗତ ଚିନ୍ତାଧାରାକୁ ଏପରିଭାବେ ପ୍ରଭାବିତ କଲାଯେ ପରିବାର ନିୟନ୍ତ୍ରଣକୁ ବାଧାଦେଉଥିଲା ପ୍ରଚଳିତ ଆଇନଗୁଡ଼ିକର ପରିବର୍ତ୍ତନ ଅଣାଗଲା ।

୧୮୬୦ ମସିହାରେ ଭାରତୀୟ ପିଙ୍ଗଲ କୋଡ଼ର ସୃଷ୍ଟିହେଲା । ଭାରତ ଉଭୟ ପାକିସ୍ଥାନ, ବଙ୍ଗଳାଦେଶ, ବର୍ମା, ଶ୍ରୀଲଙ୍କା, ମାଲେସିଆ ଓ ସିଙ୍ଗାପୁର—ଏହି ସମସ୍ତ ବ୍ରିଟିଶ ଶାସନାଧୀନ ଦେଶଗୁଡ଼ିକରେ ସେହି ଏକାଭଳି ଆଇନ ପ୍ରଚଳିତ ଥିଲା । ଭାରତଭଳି ଏହି ସବୁ ଦେଶଗୁଡ଼ିକରେ ଜନ୍ମନିୟନ୍ତ୍ରଣ ଅସ୍ତ୍ରୋପଚାର ପାଇଁ ସିଧାସଳଖ କୌଣସି ଆଇନର ବ୍ୟବସ୍ଥା ନଥିଲା । ଭାରତୀୟ ପିଙ୍ଗଲକୋର୍ଡର ୮୮ ଧାରା ଅନୁଯାୟୀ ସ୍ୱାମୀ ଓ ସ୍ତ୍ରୀ ଉଭୟଙ୍କର ସମ୍ମତିପତ୍ର ଜନ୍ମନିୟନ୍ତ୍ରଣ ଅସ୍ତ୍ରୋପଚାର କରାଯାଇପାରିବ ବୋଲି ବ୍ୟବସ୍ଥା ଅଛି । ଯଦିଓ ଆମ ଦେଶରେ ଜନ୍ମନିୟନ୍ତ୍ରଣକୁ ସମର୍ଥନ କରାଇ କୌଣସି ଆଇନର ବ୍ୟବସ୍ଥା ଅଦ୍ୟାବଧି ନାହିଁ, ତେବେ ସମ୍ପୃକ୍ତ ବ୍ୟକ୍ତିଙ୍କର ସମ୍ମତିନେଇ ଭଲବିଶ୍ୱାସରେ ଏହି ଅସ୍ତ୍ରୋପଚାର କରାଗଲେ ତାହା ଆଇନସମ୍ମତ ।

**ଆଇନ ଦୃଷ୍ଟିରେ ଗର୍ଭପାତ**—ଆଇନ ଦୃଷ୍ଟିରେ ଗର୍ଭପାତ ବିଭିନ୍ନ କାରଣରୁ କରାଯାଇପାରେ, ଯଥା—ସ୍ୱାସ୍ଥ୍ୟଗତ, ବଂଶଗତ, କୌଣସି ଔଷଧର କୁପ୍ରତିକ୍ରିୟା ଜନିତ, ନୀତିଗତ ଓ ସାମାଜିକ କାରଣ । ମା'ର ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟର ସୁରକ୍ଷା ପାଇଁ ଆଇନ ଦୃଷ୍ଟିରେ ଗର୍ଭପାତ କରାଯାଇପାରେ । ଗର୍ଭରେଥିବା ଭ୍ରୂଣ ଯଦି କୌଣସି ପ୍ରକାର ବଂଶଗତ ରୋଗରେ ପୀଡ଼ିତ ହେବାର ସମ୍ଭାବନାଥାଏ କିମ୍ବା ମା' ଗର୍ଭଧାରଣ ସମୟରେ କୌଣସି ପ୍ରକାର ଔଷଧ ସେବନ କରିଥାଏ ଯାହାର କୁପ୍ରତିକ୍ରିୟା ଭ୍ରୂଣରେ କ୍ଷତି ଘଟାଇବାର ସମ୍ଭାବନାଥାଏ,

କେବେ ଗର୍ଭପାତ କରାଯାଇପାରିବ । ପାଶ୍ଚାତ୍ୟ ଅଭ୍ୟାସର ଫଳରେ ଯଦି କୌଣସି ନାରୀ କିମ୍ବା ଅପ୍ରାପ୍ତବୟସ୍କା ବାଳିକା ଗର୍ଭଧାରଣ କରିଥାଏ କିମ୍ବା ମାନସିକ ରୋଗାକ୍ରାନ୍ତ ନାରୀ ଯଦି ଗର୍ଭଧାରଣ କରେ, ତେବେ ଜନ୍ମଗତ ଦୃଷ୍ଟିରୁ ଗର୍ଭପାତ କରାଯାଇପାରେ । ପରିବାରର ଦୁର୍ବଳ ଆର୍ଥିକ ପରିସ୍ଥିତି ଗର୍ଭପାତର ଏକ ସାମାଜିକ କାରଣ ଅଟେ ।

ଭାରତବର୍ଷରେ ୧୮୬୦ ମସିହାରୁ ଗଠିତ ହୋଇଥିବା ଭାରତୀୟ ପିଙ୍କାଲ କୋର୍ଡ଼ର ୩୧୨ ଧାରା ଅନୁଯାୟୀ ଗର୍ଭପାତ କେବଳ ମହିଳାଙ୍କର ଜୀବନରକ୍ଷା ପାଇଁ କରାଯାଉଥିବା ହୋଇ ଉଲ୍ଲେଖ ଅଛି । ଏହାର ବ୍ୟତିକ୍ରମ ଘଟିଲେ ଏହାକୁ ୭ ବର୍ଷ କାରାଦଣ୍ଡ କିମ୍ବା ଜୋରିମାନା କିମ୍ବା ଉଭୟର ବ୍ୟବସ୍ଥା ରହିଛି । ୧୯୬୪ ମସିହାରେ ଭାରତ ସରକାର ଗର୍ଭପାତକୁ ଆଇନ, ସ୍ୱାସ୍ଥ୍ୟଗତ, ଜନ୍ମଗତ ଓ ସାମାଜିକ ଦୃଷ୍ଟିକୋଣରୁ ବିଚାର କରିବାପାଇଁ ଶ୍ରୀ ଶାନ୍ତିଲାଲ ଶାହା କମିଟି ବସାଇଲେ । ୧୯୬୬ ମସିହାର ଶେଷଭାଗରେ ଏହି କମିଟି ତାଙ୍କ ରିପୋର୍ଟରେ ସୁପାରିଶ କରିଥିଲେ ଯେ ଭାରତୀୟ ପିଙ୍କାଲ କୋର୍ଡ଼ର ୩୧୨ ଧାରାକୁ ସରଳୀକରଣ କରାଯାଉ । ୧୯୬୯ ମସିହାରେ 'ଦି ମେଡ଼ିକାଲ ଟର୍ମିନେସନ୍ ଅଫ୍ ପ୍ରେଗ୍‌ନାନ୍‌ସି ବିଲ୍' ଭାରତର ପାର୍ଲାମେଣ୍ଟରେ ପେଶ୍ କରାଗଲା । ଏହା ଗୃହୀତ ହେବାପରେ ଆଇନରେ ପରିଣତ ହୋଇ 'Medical Termination of Pregnancy Act, 1971" ନାମରେ ନାମିତ ହେଲା । ବର୍ତ୍ତମାନ ଏହି ଆଇନ ଜାମ୍ମୁ କାଶ୍ମୀର ବ୍ୟତୀତ ସାରା ଦେଶରେ ପ୍ରଚଳିତ । ଏହି ଆଇନ ଅନୁସାରେ ଜଣେ ଲାଇସେନ୍‌ସପ୍ରାପ୍ତ ଡାକ୍ତର କେବଳ ୧୨ ସପ୍ତାହଠାରୁ କମ୍ ସମୟପାଇଁ ଗର୍ଭଧାରଣ କରିଥିବା ମହିଳାଙ୍କଠାରେ ଗର୍ଭପାତ କରାଇପାରିବେ ଏବଂ ୧୨ରୁ ୨୦ ସପ୍ତାହ ସମୟ ଗର୍ଭଧାରଣ କରିଥିବା ମହିଳାଙ୍କଠାରେ ଦୁଇଜଣ ଲାଇସେନ୍‌ସ ପ୍ରାପ୍ତ ଡାକ୍ତର ଚିକିତ୍ସକଙ୍କ ସହାୟତାରେ ଗର୍ଭପାତ କରାଯାଇପାରିବ । ଏହି ଆଇନ ଅନୁଯାୟୀ ଗର୍ଭଧାରଣ ରହିଲେ ଯଦି ମହିଳାଙ୍କର ଜୀବନପ୍ରତି ବିପଦର ଆଶଙ୍କା କରାଯାଏ କିମ୍ବା ତାଙ୍କର ଶାରୀରିକ ଏବଂ ମାନସିକ ସ୍ୱାସ୍ଥ୍ୟ ଯଦି ଆଘାତପ୍ରାପ୍ତ ହୁଏ, ତେବେ ଗର୍ଭପାତ କରାଯାଇପାରିବ । ପାଶ୍ଚାତ୍ୟ ଅଭ୍ୟାସର ଯୋଗୁଁ ଗର୍ଭଧାରଣ କିମ୍ବା ବିବାହିତା ମହିଳାଙ୍କ କ୍ଷେତ୍ରରେ ଗର୍ଭନିରୋଧ ପଦ୍ଧତିର ବିଫଳତାଯୋଗୁଁ ଗର୍ଭଧାରଣ ମହିଳାଙ୍କର ମାନସିକ ସ୍ୱାସ୍ଥ୍ୟକୁ ବ୍ୟତିକ୍ରମ କରେ ବୋଲି ଧରାଯାଇଛି । ଗର୍ଭଧାରଣ କରିଥିବା ସ୍ତ୍ରୀଙ୍କର ସାମାଜିକ ତଥା ଆର୍ଥିକ ପରିସ୍ଥିତିକୁ ବିଚାରକରି ଗର୍ଭପାତ କରାଯାଇପାରିବ ବୋଲି ଏହି ଆଇନରେ ବ୍ୟବସ୍ଥା ଅଛି । ଏହି ଆଇନ ଅନୁସାରେ ଗର୍ଭପାତ କେବଳ ସରକାରୀ ଡାକ୍ତରଖାନା କିମ୍ବା ସରକାରଙ୍କଦ୍ୱାରା ସ୍ୱୀକୃତ ଘରୋଇ ଚିକିତ୍ସାଳୟରେ, ସରକାରଙ୍କଦ୍ୱାରା ଲାଇସେନ୍‌ସପ୍ରାପ୍ତ ସ୍ତ୍ରୀ ରୋଗ ବିଶେଷଜ୍ଞ ଦ୍ୱାରା କରାଯାଇପାରିବ ।

**ବନ୍ଧ୍ୟାତ୍ୱ** (Sterility)—ସ୍ତ୍ରୀ ଗର୍ଭଧାରଣ କରିବାର ଅକ୍ଷମତାକୁ ବନ୍ଧ୍ୟାତ୍ୱ ବୁଝାଯାଏ । ଏଥିପାଇଁ ପୁରୁଷ, ସ୍ତ୍ରୀ କିମ୍ବା ଉଭୟ ଦାୟୀ ହୋଇପାରନ୍ତି । ଭାରତଭଳି ଏକ ବିକାଶଶୀଳ ଦେଶରେ ଜନସଂଖ୍ୟା ବିସ୍ଫୋରଣ ଏକ ପ୍ରଧାନ ସମସ୍ୟା । ଏପରିସ୍ଥିତିରେ

ଜନ୍ମନିୟନ୍ତ୍ରଣ କରାଯାଇ ଜନ୍ମହାର କମାଇବା ପ୍ରଧାନ ଲକ୍ଷ୍ୟ । କିନ୍ତୁ ଏ କଥା ମଧ୍ୟ ସତ୍ୟ ଯେ ଯେଉଁ ଦମ୍ପତିଙ୍କର ପିଲାପିଲି ହୋଇନାହିଁ ଏବଂ ଏଥିପାଇଁ ସେମାନେ ଅଶାନ୍ତ ଓ ମନସ୍ତାପରେ ଦିନ କାଟୁଛନ୍ତି, ସେମାନଙ୍କର ଉପଯୁକ୍ତ ଚିକିତ୍ସା କରାଯିବା ଉଚିତ । ଏଥିରେ ପରିବାରର ମଙ୍ଗଳ ହେବ, ସମାଜର ମଙ୍ଗଳ ହେବ । ତେଣୁ ଭାରତରେ ପରିବାର କଲ୍ୟାଣ କାର୍ଯ୍ୟକ୍ରମର ଏକ ପ୍ରଧାନ ଦିଗ ହେଉଛି ଯେ ସନ୍ତାନହୀନ ଦମ୍ପତିଙ୍କର ଉପଯୁକ୍ତ ଚିକିତ୍ସା କରିବା । ଜଣାଯାଇଛି ଯେ ଭାରତରେ ଶତକଡ଼ା ୪ରୁ ୧୦ ଭାଗ ଦମ୍ପତି ସନ୍ତାନହୀନ । ଏମାନଙ୍କ ମଧ୍ୟରୁ ଶତକଡ଼ା ୬୦ ଭାଗ କ୍ଷେତ୍ରରେ ସ୍ୱାମୀର ଦୋଷରୁ ପିଲାପିଲି ନହେଉଥିବାର ଜଣାଯାଇଛି ।

**ପ୍ରସବପରେ ମା'ର ଯତ୍ନ କାର୍ଯ୍ୟକ୍ରମ —**

ପରିବାରକୁ ସୀମିତ କରିବାପାଇଁ ଜନସାଧାରଣଙ୍କୁ ବୁଝାଇବା, ବିଶେଷତଃ ଗାଁଗହଳର ଘରଗୁଡ଼ିକରେ ଓ ପାରିବାରିକ ପରିବେଶ ମଧ୍ୟରେ କଷ୍ଟକର । ଅଧିକାଂଶ ଘରେ ସ୍ଥାନର ଅଭାବ, ତେଣୁ ପରିବାରର ମହିଳାମାନଙ୍କ ସାଙ୍ଗରେ ଏକୁଟିଆ କଥାବାର୍ତ୍ତା ହେବା ସ୍ୱାସ୍ଥ୍ୟ-କର୍ମୀବୃନ୍ଦମାନଙ୍କ ପକ୍ଷେ ଅସୁବିଧାଜନକ । ପରିବାରର ବୟସ୍କଜନମାନଙ୍କ ଉପସ୍ଥିତିରେ ପରିବାର ନିୟନ୍ତ୍ରଣ ବିଷୟରେ ମନଖୋଲା କଥାବାର୍ତ୍ତା କରିବା ମହିଳାମାନଙ୍କପକ୍ଷେ ଅସମ୍ଭବ । ଭାରତରେ ଶତକଡ଼ା ୮୦ ଭାଗ ଲୋକ ଗ୍ରାମାଞ୍ଚଳରେ ବାସକରନ୍ତି ଓ ଶତକଡ଼ା ୭୦ ଭାଗ ଲୋକ ନିରକ୍ଷର । ପୁରୁଷମାନଙ୍କ ଅପେକ୍ଷା ସ୍ତ୍ରୀମାନଙ୍କକ୍ଷେତ୍ରରେ ନିରକ୍ଷରତା ଆହୁରି ଅଧିକ । ଏହାଦ୍ୱାରା ବିଶେଷତଃ ଗ୍ରାମାଞ୍ଚଳ ପରିବେଶରେ ଛୋଟ ପରିବାର ସପକ୍ଷରେ ଯୁକ୍ତିକରିବା କଷ୍ଟକର ହୋଇପଡ଼େ ।

ଅପରପକ୍ଷରେ ସ୍ତ୍ରୀଲୋକମାନେ ଯେତେବେଳେ ଡାକ୍ତରଖାନାକୁ ଚିକିତ୍ସା ପାଇଁ କିମ୍ବା ପ୍ରସବ ପାଇଁ ଆସନ୍ତି, ସେତେବେଳେ ସେମାନେ ଘରର ଦାୟିତ୍ୱରୁ ମୁକ୍ତହୋଇ ନିଜର ସ୍ୱାସ୍ଥ୍ୟଗତ କାରଣରୁ ଡାକ୍ତର ଏବଂ ଅନ୍ୟାନ୍ୟ ସ୍ୱାସ୍ଥ୍ୟକର୍ମୀବୃନ୍ଦମାନଙ୍କ ନିକଟରେ କୃତଜ୍ଞ ରହନ୍ତି । ଏ ପରିସ୍ଥିତିରେ ସେମାନଙ୍କୁ ପରିବାର ନିୟନ୍ତ୍ରଣ ପଦ୍ଧତି ବିଷୟରେ ବୁଝାଇବା ସହଜସାଧ୍ୟ ହୋଇଥାଏ । ସନ୍ତାନ ପ୍ରସବ ପର ୩ ମାସ ସମୟକୁ ପ୍ରସବୋତ୍ତର କାଳ ବୋଲି ବୁଝାଯାଏ । ଗର୍ଭନିରୋଧ ବ୍ୟବସ୍ଥାକୁ ଗ୍ରହଣକରିବା ପାଇଁ ଏହି ସମୟ ସର୍ବୋତ୍କୃଷ୍ଟ ।

ଭାରତରେ ଏହି କାର୍ଯ୍ୟକ୍ରମ ଆମଦେଶରେ ୧୯୬୯ ମସିହାରେ ଆରମ୍ଭକରାଯାଇ ବର୍ତ୍ତମାନ ସୁଦ୍ଧା ଅନେକ ଜିଲା ସଦରମହକୁମା ଡାକ୍ତରଖାନା ଓ ଚିକିତ୍ସା ମହାବିଦ୍ୟାଳୟ ଡାକ୍ତରଖାନା-ମାନଙ୍କରେ ପ୍ରବର୍ତ୍ତିତ କରାଯାଇଛି । ଏହି କେନ୍ଦ୍ରମାନଙ୍କରେ ସ୍ତ୍ରୀ-ରୋଗ ବିଶେଷଜ୍ଞମାନଙ୍କ ବ୍ୟତୀତ ଅନ୍ୟାନ୍ୟ ପରିବାର କଲ୍ୟାଣ କର୍ମୀମାନେ ନିଯୁକ୍ତ ହୋଇଛନ୍ତି । ମହିଳାମାନଙ୍କୁ 'ଲୁପ୍' ଦେବା ବ୍ୟବସ୍ଥା, ପରିବାର ନିୟନ୍ତ୍ରଣ ଅସ୍ତ୍ରୋପଚାର ବ୍ୟବସ୍ଥା ସମେତ ଅନ୍ୟାନ୍ୟ ଗର୍ଭନିରୋଧ ବ୍ୟବସ୍ଥାଗୁଡ଼ିକର ସୁବିଧା ରହିଛି ।

## ମା' ଓ ଶିଶୁର ସ୍ୱାସ୍ଥ୍ୟ ଏବଂ ପରିବାର କଲ୍ୟାଣ—

ବିବାହିତ ଦମ୍ପତିଙ୍କ ମଧ୍ୟରେ ଶ୍ରେଷ୍ଠ ପରିବାରର ବାର୍ତ୍ତାକୁ ପ୍ରଚାରକରିବା ଗୋଟିଏ ଜନ୍ମ ଦୁଇଟି ସନ୍ତାନ ଜନ୍ମକରିବା ଏବଂ ଏହିଦ୍ୱାରା ଜନ୍ମହାରକୁ କମାଇବା ଉଦ୍ଦେଶ୍ୟରେ ପରିବାର ନିୟନ୍ତ୍ରଣ କାର୍ଯ୍ୟକ୍ରମ ଆଜି ଅଧିକାଂଶ ଦେଶରେ କାର୍ଯ୍ୟକାରୀ କରାଯାଉଛି । ଉଚ୍ଚ ଶିଶୁ ମୃତ୍ୟୁହାର ଗର୍ଭନିରୋଧ ବ୍ୟବସ୍ଥା ଅବଲମ୍ବନର ପରିପନ୍ଥୀ, ବିଶେଷକରି ଯେଉଁ କ୍ଷେତ୍ରରେ ଅସ୍ତ୍ରୋପଚାରଦ୍ୱାରା ଗର୍ଭନିରୋଧ ବ୍ୟବସ୍ଥାକୁ ଚିରସ୍ଥାୟୀ ଓ ଅପରିବର୍ତ୍ତନୀୟ କରାଯାଇଥାଏ, ସେ କ୍ଷେତ୍ରରେ ଅଳ୍ପକେତୋଟି ଜନ୍ମହୋଇଥିବା ସନ୍ତାନସନ୍ତତିଙ୍କର ଉତ୍ତମ ସ୍ୱାସ୍ଥ୍ୟର ପ୍ରତିଶ୍ରୁତି ଓ ବ୍ୟବସ୍ଥା ଜନସାଧାରଣଙ୍କ ମନରେ ଗର୍ଭନିରୋଧ ବ୍ୟବସ୍ଥା ଓ ସର୍ବୋପରି ପରିବାର ନିୟନ୍ତ୍ରଣ ଯୋଜନାପ୍ରତି ଆସ୍ଥା ଜନ୍ମାଇପାରିବ । କେବଳ ଉତ୍ତମ ମାତୃମଙ୍ଗଳ ଓ ଶିଶୁସ୍ୱାସ୍ଥ୍ୟ ସେବାଦ୍ୱାରା ହିଁ ଏହି ପ୍ରତିଶ୍ରୁତି ପାଳନ କରାଯାଇପାରିବ । ଭାରତବର୍ଷରେ ତୃତୀୟ ପଞ୍ଚବାର୍ଷିକ ଯୋଜନାକାଳ ମଧ୍ୟରେ ମା' ଓ ଶିଶୁର ସ୍ୱାସ୍ଥ୍ୟସେବା କାର୍ଯ୍ୟ ପରିବାର ନିୟନ୍ତ୍ରଣ କାର୍ଯ୍ୟକ୍ରମ ସହିତ ସମନ୍ୱିତ ହୋଇଛି ।

୧୯୭୪-୭୫ ମସିହା, ଅର୍ଥାତ୍ ପଞ୍ଚମ-ପଞ୍ଚବାର୍ଷିକ ଯୋଜନାର ପ୍ରଥମବର୍ଷରୁ ହିଁ ପରିବାର ନିୟନ୍ତ୍ରଣ, ମା' ଓ ଶିଶୁର ସ୍ୱାସ୍ଥ୍ୟ ଓ ପୁଷ୍ଟି ସମ୍ବନ୍ଧୀୟ ସେବା ଯୋଗାଇ ଦେବାପାଇଁ ଏକ ନୂତନ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିଗଲା । ଏହି ସମନ୍ୱିତ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିବାପାଇଁ କେତେକ ବ୍ୟାପକ ପନ୍ଥୀ କର୍ମଚାରୀଙ୍କୁ ନିଯୁକ୍ତ କରାଗଲା । ଏମାନଙ୍କୁ ବିଭିନ୍ନ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ତାଲିମ ଅନୁଷ୍ଠାନମାନଙ୍କରେ ତାଲିମ ଦିଆଗଲା । ୧୯୭୭ ମସିହା ମାର୍ଚ୍ଚ ମାସରେ କେନ୍ଦ୍ରରେ ନୂତନ ସରକାର ଦାୟିତ୍ୱ ଗ୍ରହଣ କଲାପରେ ସ୍ୱାସ୍ଥ୍ୟ ଓ ପରିବାର ନିୟନ୍ତ୍ରଣ ବିଭାଗ ଓ ମନ୍ତ୍ରଣାଳୟର ନାମ ପରିବର୍ତ୍ତନ କରାଯାଇ 'ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ଓ ମନ୍ତ୍ରଣାଳୟ' ରଖାଗଲା । କେନ୍ଦ୍ର ଓ ରାଜ୍ୟରେ ମନ୍ତ୍ରୀ ଓ କର୍ମଚାରୀମାନଙ୍କର ପଦବୀରେ ଆବଶ୍ୟକ ପରିବର୍ତ୍ତନ କରାଗଲା, ଯଦିଓ ଏ ସମ୍ବନ୍ଧରେ ବ୍ୟବସ୍ଥା ଠିକ୍ ପୂର୍ବପରି ରହିଲା ।

## ବିଭିନ୍ନ ଗର୍ଭନିରୋଧ ବ୍ୟବସ୍ଥା—

ସାଧାରଣତଃ ୧୫ ବର୍ଷରୁ ୪୫ ବର୍ଷ ବୟସ ପର୍ଯ୍ୟନ୍ତ ଜଣେ ସ୍ତ୍ରୀଲୋକ ସନ୍ତାନ ପ୍ରସବ କରିବାପାଇଁ ସକ୍ଷମ ହୋଇଥାନ୍ତି । ଏହି ସମୟ ମଧ୍ୟରେ ମୋଟ ପ୍ରାୟ ୩୦୦ରୁ ୪୦୦ ପରିପକ୍ୱ ଡିମ୍ବାଣୁ (Mature ovum) ସେ ଉତ୍ପନ୍ନ କରିଥାନ୍ତି । ଗୋଟିଏ ଡିମ୍ବାଣୁ ଋତୁସ୍ରାବ ଆରମ୍ଭ ହେବାର ପ୍ରାୟ ଚତୁର୍ଦ୍ଦଶ ଦିନ ଉତ୍ପନ୍ନ ହୋଇଥାଏ । ୧୧ ବର୍ଷରୁ ୧୪ ବର୍ଷ ବୟସ ମଧ୍ୟରେ ଏକ ଅପ୍ରାପ୍ତବୟସ୍କା ବାଳିକାର ଋତୁସ୍ରାବ ଆରମ୍ଭ ହୁଏ ଓ ସେ ପରିପକ୍ୱତା ହାସଲକରିଥାଏ ।

ଏକ ଦ୍ରୁତ ବର୍ଦ୍ଧିଷ୍ଣୁ ଜନସଂଖ୍ୟା ଯେ କୌଣସି ବିକାଶଶୀଳ ଦେଶର ଆର୍ଥିକ ମାନ-ଦଣ୍ଡକୁ ଦୁର୍ବଳ କରିଦେଇଥାଏ । ଏହାଛଡ଼ା ସଘନ ସନ୍ତାନ ପ୍ରସବଦ୍ୱାରା ମା'ର ସ୍ୱାସ୍ଥ୍ୟଭଙ୍ଗ

ଘଟିଥାଏ । ଫଳରେ ମା'ମାନେ ଅଧିକ ସଂଖ୍ୟାରେ ରୋଗ ଭୋଗନ୍ତି ଓ ମୃତ୍ୟୁମୁଖରେ ପଡ଼ନ୍ତି । ତେଣୁ ଜନ୍ମନିୟନ୍ତ୍ରଣର ସୁବିଧା ସମସ୍ତେ ଉପଲବ୍ଧ କରିବା ଉଚିତ । ସ୍ତ୍ରୀ ଓ ପୁରୁଷର ଦୈହିକ ମିଳନକୁ ସମ୍ପୂର୍ଣ୍ଣ ବନ୍ଦକରିବା ଗର୍ଭନିରୋଧର ଅବଶ୍ୟ ସବୁଠାରୁ ଅତି ନିର୍ଭରଶୀଳ ଉପାୟ । ସମାଜର ଇତରପ୍ରାଣୀମାନେ କେବଳ ନିଜନିଜର ବଂଶରକ୍ଷା କରିବାପାଇଁ ସହବାସ କରିଥାନ୍ତି, କିନ୍ତୁ ମାନବସମାଜରେ ସ୍ତ୍ରୀ-ପୁରୁଷର ମିଳନ ପଛରେ ସନ୍ତାନ ପ୍ରସବ ଓ ବଂଶବୃଦ୍ଧି ଉଦ୍ଦେଶ୍ୟ ବ୍ୟତୀତ ସାମାଜିକ, ସାଂସ୍କୃତିକ ଓ ବ୍ୟକ୍ତିଗତ ଚିନ୍ତାଧାରା ଅନ୍ତର୍ନିହିତ । ତେଣୁ ଗର୍ଭଧାରଣର ସମ୍ଭାବନାକୁ ଏଡ଼ାଇଦେଇ ସ୍ତ୍ରୀ ଓ ପୁରୁଷର ଦୈହିକ ମିଳନକୁ ପ୍ରଶ୍ରୟ ଦେବାପାଇଁ ବିଭିନ୍ନ ଗର୍ଭନିରୋଧ ବ୍ୟବସ୍ଥାମାନ ଉଦ୍ଭାବିତ ହୋଇଛି ।

ସ୍ତ୍ରୀଠାରୁ ଦୂରେଇ ରହିବା, ସହବାସ ସମୟରେ ସ୍ତ୍ରୀ ଜନନେନ୍ଦ୍ରିୟ ବାହାରେ ବୀର୍ଯ୍ୟ-ସ୍ଖଳନ କରିବା, ସ୍ତ୍ରୀ-ଋତୁସ୍ରାବର ନିରାପଦ ସମୟରେ ସହବାସ କରିବା ଇତ୍ୟାଦି ପ୍ରାକୃତିକ ଉପାୟରେ ଗର୍ଭନିରୋଧ କରାଯାଇପାରିବ ।

କଣ୍ଡୋମ୍, ଡାୟାଫ୍ରାମ୍, ସର୍ଭାଇକାଲ୍ କ୍ୟାପ୍ ଇତ୍ୟାଦିର ପ୍ରୟୋଗଦ୍ୱାରା ଶୁକ୍ରାଣୁ ଗର୍ଭାଶୟରେ ପହଞ୍ଚିପାରେନାହିଁ, ଫଳରେ ଡିମ୍ବାଣୁସହ ମିଳନରେ ବାଧାସୃଷ୍ଟି ହୁଏ । ଫୋମ୍ ବଟିକା ଓ କେତେକ କ୍ରିମ୍‌ର ପ୍ରୟୋଗ ଫଳରେ ଶୁକ୍ରାଣୁଗୁଡ଼ିକ ରାସାୟନିକ ପଦ୍ଧତିରେ ନଷ୍ଟ ହୋଇଯା'ନ୍ତି । ଅନ୍ୟାନ୍ୟ ଗର୍ଭନିରୋଧବ୍ୟବସ୍ଥାର ଉଦ୍ଭାବନ ପରେ ଉପରୋକ୍ତ ବ୍ୟବସ୍ଥା-ଗୁଡ଼ିକ ବିଶେଷଭାବେ ପ୍ରଚଳିତ ହେଉନାହିଁ । ବର୍ତ୍ତମାନ ଗର୍ଭାଶୟରେ ଲୁପ୍ ବା କପରଟି'ର ବ୍ୟବହାର ବିଶେଷଭାବେ ପ୍ରଚଳିତ । ଲୁପ୍ କିପରିଭାବେ ଗର୍ଭନିରୋଧରେ ସାହାଯ୍ୟକରେ ତାହା ନିଶ୍ଚିତରୂପେ ଜଣାନଥିଲେ ମଧ୍ୟ ବିଶ୍ୱାସ କରାଯାଏ ଯେ ଗର୍ଭାଶୟରେ ଲୁପ୍‌ର ଉପସ୍ଥିତିଦ୍ୱାରା ନିଷିକ୍ତ ଡିମ୍ବାଣୁକୁ ଗର୍ଭାଶୟ ଧରିରଖିପାରେନାହିଁ । ଗର୍ଭନିରୋଧ ବଟିକାର ପ୍ରଚଳନ ପୃଥିବୀର ଅଧିକାଂଶ ଦେଶରେ ବେଶ୍ ଲୋକପ୍ରିୟ ହୋଇପାରିଛି । ଋତୁସ୍ରାବର ପଞ୍ଚମଦିନରୁ ବଟିକା ଦିନକୁ ଗୋଟିଏ କରି ଖାଇବା ଆରମ୍ଭହୁଏ, ୨୧ଟି ବଟିକା ଶେଷ ହେବା ପର୍ଯ୍ୟନ୍ତ, କୌଣସି ଦିନ ବଟିକା ଖାଇବା ଭୁଲିଗଲେ ତା'ପରଦିନ ଦୁଇଟି ବଟିକା ଖାଇବାକୁ ପଡ଼େ । ୨୧ଟି ବଟିକା ସରିଗଲେ ଋତୁସ୍ରାବ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼େ । ଋତୁସ୍ରାବର ପଞ୍ଚମଦିନରୁ ପୁଣି ବଟିକା ଖାଇବା ଆରମ୍ଭହୁଏ ।

ପୁରୁଷ ଗର୍ଭନିରୋଧ ଅସ୍ତ୍ରୋପଚାର ଏକ ଅତି ସହଜ, ସରଳ ଓ ନିର୍ଭରଯୋଗ୍ୟ ଅସ୍ତ୍ରୋପଚାର । ଏହା ନିରାପଦ ଏବଂ ଏକ ବଧିର ଇଂଜେକ୍‌ସନ୍ ଦ୍ୱାରା ହୋଇପାରେ । ମାତ୍ର ୧୦-୧୫ ମିନିଟ୍ ମଧ୍ୟରେ ଏହା ଶେଷ ହୁଏ । ଅସ୍ତ୍ରୋପଚାର ପରେ ବ୍ୟକ୍ତି ଚାଲି ଚାଲି ଘରକୁ ଯାଏ ।

ମହିଳାମାନଙ୍କର ବନ୍ଧ୍ୟାକରଣ ଅସ୍ତ୍ରୋପଚାର ମଧ୍ୟ ଆମଦେଶରେ ଖୁବ୍ ଲୋକପ୍ରିୟ ହୋଇପାରିଛି । ପୁରୁଷମାନଙ୍କ ଅପେକ୍ଷା ସ୍ତ୍ରୀମାନେ ଅଧିକ ସଂଖ୍ୟାରେ ଏହି ଅସ୍ତ୍ରୋପଚାରପାଇଁ ଆସୁଛନ୍ତି । ଆଜିକାଲି ଲାପାରୋସ୍କୋପ୍ ନାମକ ଏକ ଯନ୍ତ୍ର ସାହାଯ୍ୟରେ ତଳପେଟରେ ଏକ

ଅତି ମାମୁଲିଧରଣର ଅସ୍ତ୍ରୋପଚାରଦ୍ୱାରା ଗାଁଗହଳରେ ବନ୍ଧ୍ୟାକରଣ ସଫଳତାର ସହ କରାଯାଇପାରୁଛି ।

ପରିବାର କଲ୍ୟାଣ କାର୍ଯ୍ୟକ୍ରମର ସଫଳତା ଜନସାଧାରଣଙ୍କର ଏକ ଶ୍ରେଷ୍ଠ ପରିବାରର ଆବଶ୍ୟକତା ହୃଦୟଙ୍ଗମ କରିବା ଉପରେ ନିର୍ଭର କରେ । ଭାରତଭଳି ଏକ ଗ୍ରାମବହୁଳ ଦେଶରେ ଏହି କାର୍ଯ୍ୟକ୍ରମର ଆବଶ୍ୟକତା ବିଶେଷ ଅନୁଭୂତ ହୁଏ । ଗ୍ରାମୀଣ ଲୋକଙ୍କର ଅନୁନ୍ନତ ଆର୍ଥିକ ଅବସ୍ଥା ଓ ଜଟିଳ ସ୍ୱାସ୍ଥ୍ୟ ସମସ୍ୟାର ପରିପ୍ରେକ୍ଷୀରେ ବିଚାର କରିଯିବା ଉଚିତ । ଗ୍ରାମାଞ୍ଚଳରେ ଶିକ୍ଷାର ଅଭାବ, ଅନ୍ଧବିଶ୍ୱାସ ଓ ଲୋକଙ୍କର ସଂରକ୍ଷଣ ମନୋବୃତ୍ତିକୁ ଆଖିରେ ରଖି ପରିବାର କଲ୍ୟାଣ କାର୍ଯ୍ୟକ୍ରମକୁ ଗ୍ରାମାଞ୍ଚଳରେ ଲୋକପ୍ରିୟ କରିବା ପାଇଁ ତତ୍କାଳ ଢାଞ୍ଚାର ପରିବର୍ତ୍ତନ ଆବଶ୍ୟକ, ଯାହାଫଳରେ ଗ୍ରାମାଞ୍ଚଳର ଜନସାଧାରଣ ଏହି କାର୍ଯ୍ୟକ୍ରମକୁ ନୂତନ ଦୃଷ୍ଟିକୋଣରେ ବିଚାର କରିପାରିବେ । ପରିବାର କଲ୍ୟାଣ ସମ୍ବନ୍ଧୀୟ ଜ୍ଞାନ ଓ କାର୍ଯ୍ୟପ୍ରଣାଳୀ ଜାତି ଓ ଧର୍ମ ନିର୍ବିଶେଷରେ ସମସ୍ତଲୋକଙ୍କର ହୃଦୟକୁ ଛୁଇଁପାରିବ । ଆସନ୍ତୁ, ଆମେ ସମସ୍ତେ ନିଜନିଜର ପରିସର ମଧ୍ୟରେ ଏଦିଗରେ ଉପଯୁକ୍ତ ଭୂମିକା ଗ୍ରହଣକରି ଜୀବନକୁ ସରସ ଓ ସୁନ୍ଦର କରିବା ସଙ୍ଗେ ସଙ୍ଗେ ଏକ ସୁସ୍ଥ ଓ ସୁଖୀ ଭାରତ ଗଠନ ଦିଗରେ ସାହାଯ୍ୟ କରିବା ।

---

# ଗା ପାଇଁ ଜଙ୍ଗଲୀ ଔଷଧ

[ ଜଙ୍ଗଲୀ ଔଷଧ ଶସ୍ତା ଓ ସୁଲଭ । ଏଥିରେ ଡାକ୍ତରର ଆବଶ୍ୟକତା ନାହିଁ, କେବଳ ଅନୁପାନ ଠିକଣା କରିପାରିଲେ ସୁଫଳ ମିଳେ । ଯେଉଁମାନଙ୍କ ପାଖରେ ବଡ଼ ଡାକ୍ତରଖାନା ବା ଭଲ ଡାକ୍ତରଖାନା ନାହିଁ, ତାଙ୍କପାଇଁ ଏ କାମଚଲା ବ୍ୟବସ୍ଥା ଭଲ ନୁହେଁ କି ? ]

ଇତିହାସର ପୃଷ୍ଠା ଓଲଟାଇଲେ ଆମେ ଦେଖିବା ଯେ ଆଦିମ ମାନବ ବଣ-ଜଙ୍ଗଲରେହିଁ ବାସକରୁଥିଲା । ନିଜର ଖାଦ୍ୟ ପାନୀୟ ଜଙ୍ଗଲରୁ ସଂଗ୍ରହ କରିବା ସଙ୍ଗେ ସଙ୍ଗେ ଶାରୀରିକ ଅସୁସ୍ଥତା ଦୂରୀକରଣ ପାଇଁ ମଧ୍ୟ ଜଙ୍ଗଲରେ ମିଳୁଥିବା ସାମଗ୍ରୀ ଉପରେ ନିର୍ଭର କରୁଥିଲା । ପ୍ରାକୃତିକ ପରିବେଶରେ ପ୍ରକୃତିପରି ନିଜକୁ ମିଶାଇଦେଇ ସୁସ୍ଥ, ସବଳ ଓ ଦୀର୍ଘାୟୁ ହେଉଥିଲା ।

ଔଷଧ କହିଲେ, ସଭ୍ୟତାର ଆରମ୍ଭରୁ ଲୋକେ ଚେରମୂଳ, ଡାଳପତ୍ର ଆଦି ପ୍ରାକୃତିକ ବସ୍ତୁକୁହିଁ ବୁଝିଆସିଛନ୍ତି । ସଭ୍ୟତାର କ୍ରମୋନ୍ନତି ସଙ୍ଗେ ସଙ୍ଗେ ସେହିସବୁ ବସ୍ତୁରୁ ମିଶ୍ରିତ ନାନାବିଧ ଔଷଧ କୃତ୍ରିମ ଉପାୟରେ ତିଆରି କରିଆସିଛୁ । ଅତଏବ ଔଷଧର ଆରମ୍ଭ ଯେ ଜଙ୍ଗଲଜାତ ଦ୍ରବ୍ୟମାନଙ୍କରୁ ହୋଇଅଛି ଏଥିରେ ଦ୍ୱିରୁକ୍ତି କରିବାର କିଛି ନାହିଁ । ଆହୁରି କୌତୂହଳର କଥା ଏହି ଯେ, ଏହିସବୁ ଔଷଧମାନଙ୍କର ପ୍ରୟୋଗ ମନୁଷ୍ୟ ପଶୁପକ୍ଷୀଙ୍କଠାରୁ ଦେଖି ଅନୁକରଣ କରିଛି ଓ ଶିଖିଛି—ଯାହାକୁ କି ଅତି ସ୍ଥୂଳଭାବରେ ଚିକିତ୍ସା ବିଜ୍ଞାନର ଆରମ୍ଭ ବୋଲି ଧରିନିଆଯାଇପାରେ । କେତୋଟି ଉଦାହରଣରୁ ଏହି ଉକ୍ତିର ଯଥାର୍ଥତା ଉପଲବ୍ଧି କରାଯାଇପାରିବ ।

୧ । ଜୀବଜନ୍ତୁମାନେ ଶାରୀରିକ ଉଷ୍ଣତା ଅଧିକ ମାତ୍ରାରେ ଅନୁଭବ କଲେ ଥଣ୍ଡାପାଣିରେ ବୁଡ଼ି ରହନ୍ତି ।

୧ । ଅବସନ୍ନତାଜନିତ ଅଙ୍ଗପ୍ରତ୍ୟଙ୍ଗର ଜଡ଼ତାକୁ ସୂର୍ଯ୍ୟକିରଣର ଉଷ୍ଣତା ଦ୍ୱାରା ଦୂର କରନ୍ତି ।

୩ । ଶରୀରକୁ ଆକ୍ରମଣ କରୁଥିବା ଜୀବାଣୁ ଓ କୀଟମାନଙ୍କୁ ମାରି ନଷ୍ଟକରିଦିଅନ୍ତି ।

୪ । ବିରାଡ଼ି ଓ କୁକୁର ସେମାନଙ୍କ ଦେହର ଘା'କୁ ଚାଟିଥାଆନ୍ତି ।

୫ । ଘାସ ଖାଇ କୁକୁର ସ୍ୱେଚ୍ଛାକୃତଭାବେ ବାନ୍ତିକରେ ।

୬ । ଗୋଟିଏ ଗୋଡ଼ ଭାଙ୍ଗିଗଲେ କୁକୁର ତାହାର ଅନ୍ୟ ତିନିଗୋଡ଼ରେ ଚାଲି ଭଙ୍ଗା ଗୋଡ଼ଟିକୁ ଟେକି ଓ ସିଧା ରଖେ ।

୭ । ମାଙ୍କଡ଼ ଷଡ୍ଯନ୍ତ୍ରୋନକୁ ନଜର ପାଦ୍ୱାରା ସ୍ପର୍ଶିଷି ରକ୍ତସ୍ରାବ ବନ୍ଦରେ ଏବଂ ଭଣ୍ଡା ଅ.ଦ ବାହ୍ୟ ବସ୍ତୁକୁ ଭାଙ୍ଗ ଦେହରୁ ଅଲଗା କରିଥାଏ ।

୮ । ପ୍ରସବ ସମୟରେ ପ୍ରସୂତ ପଶୁ ମାଈ ପଶୁର ପାଖରେ ରହି ତାକୁ ସାହାଯ୍ୟ କରିବାକୁ ଚେଷ୍ଟାକରେ ଏବଂ ବଡ଼ମାନେ ଶାବକର ଯତ୍ନ ନଅନ୍ତି ।

୯ । ହିପୋପଟାମସ୍ ବା ଜଳହସ୍ତୀ ଅତ୍ୟଧିକ ଖାଇଲାପରେ ଅସ୍ୱସ୍ତି ଅନୁଭବକଲେ ବୃକ୍ଷର ଭଙ୍ଗା ଅଂଶ କିମ୍ବା ଅନ୍ୟ କୌଣସି ତୀକ୍ଷ୍ଣ ବସ୍ତୁ ଦେହରେ ବାଡେଇ ହୋଇ ଦେହରୁ ରକ୍ତକ୍ଷରଣ କରିଥାଏ ।

୧୦ । ମଳଦ୍ୱାରରେ ଅଣ୍ଡା ପୁରାଇ ଚଢ଼େଇ ଝାଡ଼ା କରାଇଥାଏ ।

ଏହିପରି ଅନେକ ଉଦାହରଣ ଦିଆଯାଇପାରେ ଯାହାକି ପ୍ରାକୃତିକଭାବେ ପ୍ରମାଣ କରେ ଯେ ଆଦିମମାନବ ପ୍ରାଣୀଜଗତରୁ ଔଷଧ ଏବଂ ଅନ୍ୟାନ୍ୟ ପ୍ରତିକାର ପ୍ରୟୋଗ ଶିଖିବା ଆରମ୍ଭ କରିଛି, ଯାହାକୁ କି ଆଧାର କରି ପରବର୍ତ୍ତୀ ସମୟରେ ଚିକିତ୍ସାବିଜ୍ଞାନ ଉନ୍ନତ ଓ ପରିମାର୍ଜିତ ହୋଇଛି ।

ଜୁଲିୟସ୍ ଜଲି କହନ୍ତି, "ଚିକିତ୍ସା ବିଜ୍ଞାନ ହେଉଛି ଭାରତୀୟ ବିଜ୍ଞାନମାନଙ୍କ ମଧ୍ୟରେ ପ୍ରାଚୀନତମ ଏବଂ ଭାରତୀୟମାନେହିଁ ଏହି ବିଜ୍ଞାନରେ ପ୍ରଥମେ ପାରଦର୍ଶିତା ଲାଭକରିଥିଲେ ।" ଭାରତୀୟ ଚିକିତ୍ସା ବିଜ୍ଞାନ 'ଆୟୁର୍ବେଦ' ଅତି ପୁରାତନ ଓ ପ୍ରାଚୀନ । ଚିକିତ୍ସା ବିଜ୍ଞାନ ଭାରତ ଭୂଖଣ୍ଡରୁ ଆରମ୍ଭ ହୋଇ ସମୟକ୍ରମେ ଅନ୍ୟାନ୍ୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦେଶମାନଙ୍କୁ ବ୍ୟବସାୟ ବାଣିଜ୍ୟ ମାଧ୍ୟମରେ ପ୍ରସାରଲାଭକରିଛି । ତାକୁହିଁ ମୂଳଦୁଆକରି ଆଜିର ପାଶ୍ଚାତ୍ୟ ଚିକିତ୍ସା-ବିଜ୍ଞାନ ଗଢ଼ିଉଠିଛି ଏବଂ ଅନ୍ୟ ସମସ୍ତ ଚିକିତ୍ସାପଦ୍ଧତିକୁ ଟପିଯାଇଛି । ନାନା କାରଣରୁ ଆୟୁର୍ବେଦ ଚିକିତ୍ସା ବିଜ୍ଞାନର ବିକାଶ ବାଧାପ୍ରାପ୍ତ ହୋଇଛି ଏବଂ କାଳକ୍ରମେ ଏହାର ଅବନତ ଘଟି ବିଲୁପ୍ତ ପ୍ରାୟ ଅବସ୍ଥାରେ ଆସି ପହଞ୍ଚିଛି ।

ଆୟୁର୍ବେଦିକ ବା କବିରାଜି ଔଷଧ ପ୍ରଧାନତଃ ଜଙ୍ଗଲରୁ ମିଳୁଥିବା ଚେରମୂଳ, ଗଛଲତା ଇତ୍ୟାଦି ଦ୍ରବ୍ୟରୁ ପ୍ରସ୍ତୁତ କରାଯାଇଥାଏ । ଏପରିକି ଏହି ପଦ୍ଧତିରେ ଦିଆଯାଉଥିବା ଅନୁପାନ ଓ ଉପକରଣମାନ ମଧ୍ୟ ଜଙ୍ଗଲ ଜାତ ଦ୍ରବ୍ୟମାନଙ୍କରୁ ମିଳିଥାଏ । ଆଧୁନିକ ଚିକିତ୍ସା ବିଜ୍ଞାନରେ ମଧ୍ୟ ଜଙ୍ଗଲଜାତ ଦ୍ରବ୍ୟର ବହୁଳ ବ୍ୟବହାର ହେଉଅଛି । ଔଷଧ ଗୁଣଯୁକ୍ତ ସାମଗ୍ରୀ ଜଙ୍ଗଲରେ ଏତେ ବ୍ୟାପକ ଓ ପ୍ରଚୁର ପରିମାଣରେ ରହିଛି ଯେ ସବୁଗୁଡ଼ିକୁ ବର୍ଣ୍ଣନା କରିବା ଏହି କ୍ଷୁଦ୍ର ପ୍ରବନ୍ଧର ପରିସରରେ ସମ୍ଭବ ନୁହେଁ । କେବଳ ମାତ୍ର ଏଠାରେ କେତୋଟି ଉଦାହରଣଦେଇ ତାହାର ଯଥାର୍ଥତା ପ୍ରତିପାଦନ କରାଯାଉଛି ।

ଜଙ୍ଗଲରୁ ପ୍ରାପ୍ତ ଔଷଧଦ୍ରବ୍ୟ ସବୁକୁ ସେସବୁର ପ୍ରକୃତି ଭିତ୍ତିରେ ଭିନ୍ନ ଶ୍ରେଣୀରେ ନିମ୍ନମତେ ବିଭକ୍ତ କରାଯାଇପାରେ—

୧ । କେବଳ ଜଙ୍ଗଲରେ ବଢ଼ୁଥିବା ବୃକ୍ଷଲତା, ଗୁଳ୍ମ ଆଦି ।
୨ । ଜଙ୍ଗଲ ତଥା ଅନ୍ୟସ୍ଥାନରେ ବଢ଼ୁଥିବା ବୃକ୍ଷଲତା ।
୩ । ଜଙ୍ଗଲରେ ବାସକରୁଥିବା ପଶୁପକ୍ଷୀଙ୍କର ମାଂସ, ମଳ, ମୂତ୍ର ଇତ୍ୟାଦି ।
୪ । ଜଙ୍ଗଲ ମାଟିରୁ ବା ମାଟିତଳୁ ମିଳୁଥିବା ଦ୍ରବ୍ୟ (ଧାତବ ଆଦି) ।
୫ । ଜଙ୍ଗଲର ପାଣି, ପବନ, ଜଳବାୟୁ ଓ ପରିବେଶ ।

ଔଷଧୀୟ ଗୁଣାବଳୀ ଏ ସମସ୍ତ ପ୍ରକାର ଦ୍ରବ୍ୟମାନଙ୍କର ରହିଅଛି ଏବଂ ଅବସ୍ଥା ଅନୁଯାୟୀ ଏଗୁଡ଼ିକର ବ୍ୟବହାର କରାଯାଇଥାଏ ।

'ତ୍ରିଫଳା' ଏକ ଅତି ପରିଚିତ ସାଧାରଣ ସାମଗ୍ରୀ । ହରିଡ଼ା, ବାହାଡ଼ା ଓ ଅଁଳା ଏହି ତିନି ଫଳର ମିଶ୍ରଣକୁ ତ୍ରିଫଳା କୁହାଯାଏ । ଅଗ୍ନିମାନ୍ଦ୍ୟ, କୋଷ୍ଠବଦ୍ଧତା ଆଦି ଅନେକ ପ୍ରକାର ଅସୁସ୍ଥତାରେ ଏହାର ପ୍ରୟୋଗ କରାଯାଇଥାଏ । ଏହି ଫଳଗଛଗୁଡ଼ିକ ଜଙ୍ଗଲରେ ବଢ଼ିଥାଆନ୍ତି । ପୃଥକ୍ ପୃଥକ୍ ଭାବେ ମଧ୍ୟ ଏହି ଫଳମାନ ଔଷଧ ଓ ଅନ୍ୟାନ୍ୟ କାର୍ଯ୍ୟରେ ବ୍ୟବହାର କରାଯାଏ । କଥାରେ ଅଛି, 'ଧନ୍ୟରେ ହରିଡ଼ା, ସକଳ କାର୍ଯ୍ୟରେ ଲୋଡ଼ାର ଲୋଡ଼ା' । ନାନାବିଧ ଔଷଧ ବ୍ୟତୀତ ଚମଡ଼ା ଶିଳ୍ପରେ ମଧ୍ୟ ଏହା ବ୍ୟବହୃତ ହୁଏ । ଖାଦ୍ୟସାର 'ସି' (Vita-c) ଏଥିରେ ପ୍ରଚୁର ପରିମାଣରେ ଥାଏ । ନାନା ପ୍ରକାର ଔଷଧ ବ୍ୟତୀତ କେଶତୈଳରେ ମଧ୍ୟ ଏହାକୁ ବ୍ୟବହାର କରାଯାଏ । ବ୍ରାହ୍ମୀ ଓ ଭୃଙ୍ଗରାଜ ତୈଳ ସ୍ମୃତିବର୍ଦ୍ଧକ ଓ କେଶପରିପୋଷକ । ରସାୟନ ଓ କେଶତୈଳରେ ଏମାନଙ୍କର ବ୍ୟବହାର ଦେଖିବାକୁ ମିଳେ ।

ରାମାୟଣରେ 'ଅଶୋକ ବନରେ ସୀତା' କାହାଣୀ ସମସ୍ତଙ୍କୁ ଜଣା । ରାବଣ ସୀତାଙ୍କୁ ହରଣକରି ଅଶୋକ ବନରେ ନରଖି ସ୍ୱର୍ଣ୍ଣଲଙ୍କାର ଐଶ୍ୱର୍ଯ୍ୟ ଏବଂ ପ୍ରାଚୁର୍ଯ୍ୟଭରା ଉଆସରେ ରଖିପାରିଥାନ୍ତା । କିନ୍ତୁ ସୀତାଙ୍କୁ ଅଶୋକ ବନରେ ରଖିବା ମୂଳରେ ବୈଜ୍ଞାନିକ ତଥ୍ୟ ଅନ୍ତର୍ନିହିତ ଅଛି । ବିବାହପରଠାରୁ ଅଶୋକବନକୁ ନିଆଯିବା ପର୍ଯ୍ୟନ୍ତ ସୀତାଙ୍କର ଗର୍ଭଧାରଣ ହୋଇନଥିଲା । ସମ୍ଭବତଃ ସୀତା ବନ୍ଧ୍ୟା ରୋଗରେ ପୀଡ଼ିତାଥିଲେ । ଦୀର୍ଘକାଳ ଅଶୋକବନରେ ରହିବାପରେ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ କରନ୍ତେ ସୀତା ଗର୍ଭବତୀ ହୋଇଥିଲେ । ଆୟୁର୍ବେଦରେ ବନ୍ଧ୍ୟା ଦୂରୀକରଣ ପାଇଁ ଅଶୋକ, ଅଶୋକାରିଷ୍ଟ, ଅଶୋକାସବ ଆଦି ଔଷଧରୂପେ ପ୍ରୟୋଗ କରାଯାଏ । ଏହାର ପ୍ରମାଣ ଆମ ଓଡ଼ିଶାର ଅଶୋକାଷ୍ଟମୀ ପର୍ବପାଳନରେ ପ୍ରତିଫଳିତ ହୋଇଅଛି । ଏହିଦିନ ସଧବା ସ୍ତ୍ରୀଲୋକମାନେ ଅଶୋକକଢ଼ିକୁ ପୂଜାକରି ସେବନ କରିବାର ବିଧି ଅଛି ।

ସେହିପରି ହନୁମାନଙ୍କ ଗନ୍ଧମାର୍ଦନ ପର୍ବତ ଆହରଣ ରାମାୟଣରେ ଅନ୍ୟ ଏକ ଦୃଷ୍ଟାନ୍ତ । ଶକ୍ତିଭେଦନଜନିତ ଲକ୍ଷ୍ମଣଙ୍କର ଶରୀରରୁ ଅତ୍ୟଧିକ ରକ୍ତସ୍ରାବ ହୁଅନ୍ତେ ଲକ୍ଷ୍ମଣ ଚେତନା ହରାଇ ପଡ଼ିରହିଲେ । ରକ୍ତରୋଧ କରିବାପାଇଁ 'ବିଶଲ୍ୟକରଣୀ'ର ଆବଶ୍ୟକ ହେଲା ଓ ତାହା

ଆଣିବାପାଇଁ ହନୁମାନଙ୍କୁ ଗନ୍ଧମାଦନ ପର୍ବତକୁ ପ୍ରେରଣ କରାଗଲା । କେଉଁଟା ବିଶଲ୍ୟକରଣୀ ଜାଣିନପାରି ହନୁମାନ ପାହାଡ଼ଟିକୁ ସମୂଳେ ଓପାଡ଼ି ନେଇଆସିଲେ । ରକ୍ତସ୍ରାବରୋଧକ ଓ କ୍ଷତପୂରକ ଗୁଣଯୋଗୁ ବିଶଲ୍ୟକରଣୀର ଉପଯୋଗ ଆୟୁର୍ବେଦ ଔଷଧରେ କରାଯାଇଥାଏ ।

ବାସଙ୍ଗ ଆଉ ଏକ ଜଙ୍ଗଲଜାତ ବୃକ୍ଷ । କାଶ, ଥଣ୍ଡା ଓ ଫୁସ୍‌ଫୁସ୍ ରୋଗରେ ଏହାକୁ 'ବାସବଲେହ' ଆଦି ଔଷଧରେ ବ୍ୟବହାର କରାଯାଏ । ଏଲୋପାଥି ଔଷଧରେ ମଧ୍ୟ 'ଆଁରପ୍‌ହ୍ୱସର୍' କାଶ ପାଇଁ ବ୍ୟବହାର କରାଯାଏ । ସର୍ପଗନ୍ଧା ବା ପାତାଳଗରୁଡ଼ ମଧ୍ୟ ଜଙ୍ଗଲଜାତ ଲତା । ଏହାକୁ ଆୟୁର୍ବେଦରେ ରକ୍ତଚାପ ଓ ମସ୍ତିଷ୍କ ବିକୃତି ରୋଗରେ ବ୍ୟବହାର କରାଯାଏ । ଆଧୁନିକ ଚିକିତ୍ସା ବିଜ୍ଞାନର ଅନ୍ୟତମ ସଫଳତା ଏଥିରୁ ପ୍ରସ୍ତୁତ 'ସରପ୍‌ସିନ୍' । ସେହିପରି ଆଧୁନିକ ଚିକିତ୍ସା ବିଜ୍ଞାନରେ ବ୍ୟବହୃତ ହେଉଥିବା କୁଇନାଇନ୍, ନକ୍‌ସଭୋମିକା, କୋକେନ, ମର୍ଫିନ, ଆଟ୍ରୋପିନ୍ ଓ ଅଫିମ ମଧ୍ୟ ଜଙ୍ଗଲଜାତ ବୃକ୍ଷମାନଙ୍କରୁ ମିଳିଥାଏ । ଏହିସବୁ ଔଷଧଗଛ ମଧ୍ୟ ଅଜକାଲି ଫାର୍ମମାନଙ୍କରେ ସୃଷ୍ଟି କରାଯାଉଛି । ବେଲ, ଅଶ୍ୱଗନ୍ଧା ସାଧାରଣ ବ୍ୟବହୃତ ଔଷଧମାନଙ୍କ ମଧ୍ୟରେ ଅନ୍ୟତମ ।

ଶିଳାଜତୁ, ଶଙ୍ଖଚୂନ, ଅଭ୍ର, ସୈନ୍ଧବଲବଣ, ଲୌହ ଆଦି ଧାତୁ ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ ଜଙ୍ଗଲଜାତ ଦ୍ରବ୍ୟରୂପେ ଗଣ୍ୟ । ଏ ସମସ୍ତ ଦ୍ରବ୍ୟ ନାନାପ୍ରକାର କବିରାଜି ତଥା ଡାକ୍ତରୀ ଔଷଧରେ ବ୍ୟବହୃତ ହୁଅନ୍ତି ।

ବନ୍ୟଜନ୍ତୁମାନଙ୍କ ମଧ୍ୟରୁ ଅନେକଙ୍କ ମାଂସ, ମଳମୂତ୍ର ଏବଂ ଚର୍ମ ଆଦି ମଧ୍ୟ ଔଷଧମାନଙ୍କରେ ବ୍ୟବହୃତ ହୁଏ । ଏମାନଙ୍କର ମାଧ୍ୟମରେ ଅନେକପ୍ରକାର ଔଷଧ ମଧ୍ୟ ପ୍ରସ୍ତୁତ କରାଯାଏ । ଉଦାହରଣ ସ୍ୱରୂପ—ସର୍ପ ଏକ ଭୟଙ୍କର ସରୀସୃପ । ସର୍ପାଘାତଯୋଗୁ ଶହ ଶହ ଲୋକ ମୃତ୍ୟୁମୁଖରେ ପଡ଼ିଥାଆନ୍ତି । କିନ୍ତୁ ଏହା ମଧ୍ୟ ସତ ଯେ ସେହି ବିଷାକ୍ତ ସର୍ପ-ଗରଳ ମଧ୍ୟ ଔଷଧରୂପେ ବ୍ୟବହାର କରାଯାଏ । ଏହା ସାହାଯ୍ୟରେ antisnake venum ପ୍ରସ୍ତୁତ କରାଯାଇ ସର୍ପାଘାତର ଚିକିତ୍ସା କରାଯାଏ । ମୃଗର ନାଭିରୁ ବାହାରୁଥିବା କସ୍ତୁରିର ଔଷଧୀୟଗୁଣ ସମସ୍ତେ ଜାଣନ୍ତି । ବାଦୁଡ଼ିର ମାଂସ ଭକ୍ଷଣରେ ଶ୍ୱାସରୋଗ ଦୂର ହୁଏ ବୋଲି କୁହାଯାଇଛି । ମହୁମାଛି ଫୁଲରୁ ଫୁଲ ଉଡ଼ି ଉଡ଼ି ଯେଉଁ ମଧୁ ସଂଗ୍ରହ କରେ ତା'ର ମହୁଫେଣାରେ ଜଙ୍ଗଲର ନିଭୃତ ସ୍ଥାନରେ ସଞ୍ଚୟ କରେ ତାହା ହୁଏ ବଣୁଆ ଅଦିବାସୀର ଶିକାର । ମହୁ ଯେ କେବଳ ଏକ ଉପାଦେୟ ଖାଦ୍ୟ ତାହା ନୁହେଁ, ତାହା ଏକ ଔଷଧ ମଧ୍ୟ । ମହୁ, ଗୁଳଖୀରସ, ଅଦାରସ ପ୍ରାୟ ଅଧିକାଂଶ କବିରାଜି ଔଷଧରେ ଅନୁପାନରୂପେ ପ୍ରୟୋଗ କରାଯାଇଥାଏ ।

ସବୁ ଜିନିଷ ଯେ ଏକାଧାରରେ ଭଲ ବା ଉପକାରୀ ତାହା ସୃଷ୍ଟିର ବୈଚିତ୍ର୍ୟରୁ ହୋଇନଥାଏ । ଚନ୍ଦ୍ରଦେହରେ ମଧ୍ୟ କଳଙ୍କ ଅଛି । ସେହିପରି ଜଙ୍ଗଲଜାତ ସମସ୍ତ ଦ୍ରବ୍ୟ ଯେ କେବଳ ମନୁଷ୍ୟର ଉପକାରରେ ଲାଗିଥାଏ ତାହା ନୁହେଁ; ସେଥି ମଧ୍ୟରେ ଅନେକ କ୍ଷତିକାରକ ଦ୍ରବ୍ୟ ମଧ୍ୟ ଦେଖାଯାଏ । ସେଗୁଡ଼ିକ ହେଲେ ନାନାପ୍ରକାରର ବିଷାକ୍ତ ଉଦ୍ଭିଦ

ଓ ପ୍ରାଣୀ । କଣିଅର, କୁଚିଲା, ଜହରମହୁରି ଆଦି ବିଷାକ୍ତଦ୍ରବ୍ୟ ସେବନଜନିତ ମଣିଷ ଅପମୃତ୍ୟୁର ଶିକାର ହୋଇଥାଏ । ହୁଏତ ଏହି ଅପମୃତ୍ୟୁର ଭିନ୍ନ ଭିନ୍ନ କାରଣ ଥାଇପାରେ । କେତେକ ବିଷାକ୍ତ ଗଛଲତା ଖାଇ ଗୃହପାଳିତ ପଶୁମାନେ ମଧ୍ୟ ମୃତ୍ୟୁମୁଖରେ ପଡ଼ିଥାଆନ୍ତି । ରତି ବା କାଇଁଚକୁ cattle poison ବା ଗୋବିଷରୂପେ ବ୍ୟବହାର କରାଯାଇଥାଏ । ସେହିପରି ଭ୍ରୂଣହତ୍ୟା ଓ ଗର୍ଭପାତ ପାଇଁ ମଧ୍ୟ ଅନେକ ଗଛପତ୍ର ଓ ଚେରମୂଳିର ଉପଯୋଗ କରାଯାଇଥାଏ । ସେମାନଙ୍କ ମଧ୍ୟରୁ କେତେକ ହେଲେ ଚିତା, ଅର୍କ, ଖଲିଆ, ପିଚୁଆଁରୀ, ଶିଙ୍ଘ ଇତ୍ୟାଦି । ସର୍ବୋପରି ଜଙ୍ଗଲ ମଧ୍ୟ ଅନେକ କ୍ଷେତ୍ରରେ ମାନବର ରୋଗର କାରଣ ହୋଇଥାଏ । ଯେପରିକି ମାଳଅଞ୍ଚଳରେ ମଶାମାନଙ୍କଦ୍ୱାରା ବିଭିନ୍ନ ପ୍ରକାର ଜ୍ୱର, ପଶୁମାନଙ୍କଠାରୁ କୃମିରୋଗର ସଂପ୍ରସାରଣ ଏବଂ ପଶୁକାମୁଡ଼ାରୁ ଜଳାତଙ୍କ ରୋଗ ଇତ୍ୟାଦି । ମାତ୍ର ଏସବୁକୁ ପ୍ରତିରୋଧ ତଥା ପ୍ରତିଶୋଧ କରାଯାଇପାରେ ।

ଏହିସବୁକୁ ଅନୁଧ୍ୟାନ କଲେ ସର୍ବଶେଷରେ ଆମେ ଏହି ସିଦ୍ଧାନ୍ତରେ ଉପନୀତ ହେବା ଯେ, ମାନବ ସେବାରେ ଜଙ୍ଗଲଜାତ ଔଷଧର ଅବଦାନ ଯଥେଷ୍ଟ ପରିମାଣରେ ରହିଛି ଓ ଜଙ୍ଗଲକୁ ବାଦ୍‌ଦେଇ ମଣିଷ ଚିକିତ୍ସାକ୍ଷେତ୍ରରେ ଅଗ୍ରସର ହୋଇପାରିବନାହିଁ । ଅଧିକନ୍ତୁ, ସଭ୍ୟତାର ଅଗ୍ରଗତି ସଙ୍ଗେ ସଙ୍ଗେ କର୍କଟପରି ଦୁଃସାଧ୍ୟ ରୋଗମାନଙ୍କର ନିରାକରଣ ଆଶାରେ ଆଧୁନିକ ବୈଜ୍ଞାନିକମାନେ ଜଙ୍ଗଲଜାତ ଦ୍ରବ୍ୟମାନଙ୍କୁ ନେଇ ଅହରହ ଆହରଣ ଗବେଷଣା କରି ଚାଲିଥିବେ । ସୃଷ୍ଟିର ଆରମ୍ଭରୁ ଯେପରି ଜଙ୍ଗଲ ମାନବର ଚିରସହଚର ହୋଇ ରହିଆସିଛି, କାଳକାଳକୁ ମଧ୍ୟ ସେହିପରି ରହିଥିବ ଏବଂ ତା'ର ସେବାରେ ଲାଗିଥିବ ।

## ବିଦ୍ୟାଳୟରେ ସ୍ୱାସ୍ଥ୍ୟସେବା

[ ଛାତ୍ରର ଦୈହିକ ଅବସ୍ଥା ତା'ର ମାନସିକ ଅବସ୍ଥାକୁ ପ୍ରଭାବିତ କରେ । ସେହି ଦୈହିକ ଅବସ୍ଥାର ତତ୍ତ୍ୱାବଧାରକ ହେବ କିଏ ? ]

'ବିଦ୍ୟାଳୟରେ ସ୍ୱାସ୍ଥ୍ୟସେବା' ଆମ ସମସ୍ତଙ୍କ ପାଖରେ ଏକ ଅଜଣା ଅଶୁଣା କଥା କହିଲେ ଅତ୍ୟୁକ୍ତି ହେବନି । କାରଣ ଆମ ବିଦ୍ୟାଳୟମାନଙ୍କ ପାଇଁ ସ୍ୱାସ୍ଥ୍ୟସେବାର ବ୍ୟବସ୍ଥା ପ୍ରାୟ ନାହିଁ; ଯାହା ଅଛି ତା' ନଥିବା ସଙ୍ଗେ ସମାନ । ତେଣୁ ସ୍ୱାସ୍ଥ୍ୟସେବା ପାଇଁ କ'ଣ କରାଯାଇପାରେ ତାହା ଆମର ଚିନ୍ତା କରିବାର କଥା ।

ସମାଜର ସ୍ୱାସ୍ଥ୍ୟରକ୍ଷାରେ ବିଦ୍ୟାଳୟରେ ସ୍ୱାସ୍ଥ୍ୟସେବାର ସ୍ଥାନ ଅତି ଉଚ୍ଚରେ । କମ୍ ଖର୍ଚ୍ଚରେ ସମାଜକୁ ନୀରୋଗ ରଖିବାର ଏହା ଏକ ଉତ୍ତମ ପନ୍ଥା । ବିଂଶଶତାବ୍ଦୀର ପ୍ରାରମ୍ଭରୁ ଏ ଧାରଣାର ଜନ୍ମ । ଶ୍ରେଷ୍ଠପିଲମାନଙ୍କ ସ୍ୱାସ୍ଥ୍ୟସେବାରୁ ଆରମ୍ଭହୋଇ ଏହା ଏବେ ସମସ୍ତ ଛାତ୍ର ତଥା ଶିକ୍ଷାସହ ସମ୍ପୃକ୍ତ କର୍ମିବୃନ୍ଦମାନଙ୍କ ସ୍ୱାସ୍ଥ୍ୟପରୀକ୍ଷା ଓ ସ୍ୱାସ୍ଥ୍ୟୋନ୍ନତ ନିମିତ୍ତ କାର୍ଯ୍ୟକରିବାଭଳି ସ୍ତରକୁ ଆସିପାରିଛି ।

୧୯୦୯ ମସିହାରେ ଆମଦେଶର ବରୋଦା ନଗରରେ ପ୍ରଥମେ ବିଦ୍ୟାଳୟରେ ସ୍ୱାସ୍ଥ୍ୟ-ସେବା କାମ ଆରମ୍ଭ ହୋଇଥିଲା । ୧୯୪୭ ମସିହାରେ 'ଭୋର କମିଟି' ଭାରତରେ ଏଭଳି କାମ ନଥିବା ବା ଯାହା ଅଛି ତା' ପ୍ରାୟ କିଛି ନୁହେଁ ବୋଲି ସରକାରଙ୍କୁ ଜଣାଇଲେ । ତା' ଫଳରେ ୧୯୫୩ ମସିହାରେ 'ଶିକ୍ଷାକମିଟି' ବିଦ୍ୟାଳୟର ଛାତ୍ରମାନଙ୍କ ସ୍ୱାସ୍ଥ୍ୟପରୀକ୍ଷା ତଥା ମଧ୍ୟାହ୍ନଭୋଜନ ବ୍ୟବସ୍ଥା କରିବାକୁ ସରକାରଙ୍କୁ ସୁପାରିସ କଲେ । ୧୯୬୧ ମସିହାରେ ବିଦ୍ୟାଳୟର ଛାତ୍ରମାନଙ୍କ ସ୍ୱାସ୍ଥ୍ୟ ପରୀକ୍ଷାକରିବା ତଥା ତହିଁର ଉନ୍ନତ ବିଧାନ କରିବାପାଇଁ ଭାରତ ସରକାର ଗୋଟିଏ ସ୍ୱାସ୍ଥ୍ୟକମିଟି ବସାଇଲେ । ଉକ୍ତ କମିଟି ୧୯୬୧ରେ ତାଙ୍କର ବିବରଣୀ ଦେଲେ । ତା' ଫଳରେ କେତେକ ରାଜ୍ୟ ପଞ୍ଚବାର୍ଷିକ ଯୋଜନାଗୁଡ଼ିକରେ ବିଦ୍ୟାଳୟରେ ସ୍ୱାସ୍ଥ୍ୟସେବାକୁ ସ୍ଥାନଦେଲେ ଓ ମଧ୍ୟାହ୍ନଭୋଜନର ବ୍ୟବସ୍ଥା ମଧ୍ୟ କଲେ । ଏ ସବୁ ସତ୍ତ୍ୱେ ଆମକୁ ସ୍ୱୀକାର କରିବାକୁ ହେବ ଯେ; ଅନ୍ୟାନ୍ୟ ବିକାଶଶୀଳ ଦେଶଗୁଡ଼ିକ ତୁଳନାରେ ଆମ ଦେଶର ବିଦ୍ୟାଳୟରେ ସ୍ୱାସ୍ଥ୍ୟସେବା ବ୍ୟବସ୍ଥା ଖୁବ୍ ନିମ୍ନସ୍ତରରେ ଅଛି ।

ବିଦ୍ୟାଳୟରେ ସ୍ୱାସ୍ଥ୍ୟସେବା ସମ୍ପର୍କରେ ଆଲୋଚନା କଲାବେଳେ ଆମ୍ଭେମାନେ ସ୍ଥାନୀୟ ସ୍ୱାସ୍ଥ୍ୟ-ସମସ୍ୟା, ଲୋକମାନଙ୍କର ଶିକ୍ଷା ଓ ସଂସ୍କୃତି ଏବଂ ସେମାନଙ୍କର ଆର୍ଥିକ ପରିସ୍ଥିତି ଇତ୍ୟାଦି ବିଷୟ ବିଚାରକୁ ନେଇଥାଉ । ଏସବୁ ଦୃଷ୍ଟିରୁ ବିଚାର କଲେ ବିଭିନ୍ନ ସ୍ଥାନରେ ଛାତ୍ରମାନଙ୍କ ସ୍ୱାସ୍ଥ୍ୟ-ସମସ୍ୟା ଭିନ୍ନ ଭିନ୍ନ ହୋଇଥାଏ । ତଥାପି କେତେକ ସମସ୍ୟା ପ୍ରାୟ

ସବୁଠାରେ ଏକାଭଳି ଦେଖାଯାଏ । ସେଗୁଡ଼ିକ ହେଲ ପୁଷ୍ଟିଜନିତ ଖାଦ୍ୟାଭାବ, ଉଆଁରୋଗ, ଚର୍ମ, କର୍ଣ୍ଣ, ଚକ୍ଷୁ ଏବଂ ଦନ୍ତରୋଗ । ଏସବୁ ସମସ୍ୟାକୁ ଜ ସମୂଳେ ଧ୍ୱଂସକର ହେବନ, ତେବେ ଏମାନଙ୍କ କବଳରୁ ପିଲମାନଙ୍କୁ ରକ୍ଷାକର ସ୍ୱାସ୍ଥ୍ୟବାନ୍ ନାଗରିକ ଗଠନ କରିହେବ । ସେଥିପାଇଁ ଅବଶ୍ୟ ଆମ୍ଭମାନଙ୍କୁ କେତେକ ସୀମିତ ବ୍ୟବସ୍ଥା ଗ୍ରହଣ କରିବାକୁ ପଡ଼ିବ । ସେଗୁଡ଼ିକ ହେଲ ସ୍ୱାସ୍ଥ୍ୟ-ଗଠନ ତଥା ସ୍ୱାସ୍ଥ୍ୟର ଉନ୍ନତି କରିବା, ରୋଗପ୍ରତିରୋଧ କରିବା, ସ୍ୱାସ୍ଥ୍ୟ ସମ୍ପର୍କୀୟ ଅସୁବିଧାମାନ ନିର୍ଣ୍ଣୟକରି ତା'ର ପ୍ରତିକାର ତଥା ସମୀକ୍ଷା କରିବା ଏବଂ ପିଲମାନଙ୍କପାଇଁ ସ୍ୱାସ୍ଥ୍ୟକର ବାତାବରଣର ବ୍ୟବସ୍ଥା କରିବା ।

ଉପରୋକ୍ତ କାର୍ଯ୍ୟାନୁଷ୍ଠାନ ନିମିତ୍ତ ପ୍ରଥମେ ବିଦ୍ୟାଳୟ କଥା ଚିନ୍ତାକରିବା ଉଚିତ । ବିଦ୍ୟାଳୟର ସ୍ୱାସ୍ଥ୍ୟକର ପରିସ୍ଥିତି ନିର୍ଭର କରେ ଏହାର ଅବସ୍ଥିତି, ଗଠନ, ଉପକରଣ ଓ ବାତାବରଣ ଉପରେ । ଏ ସବୁ ଆଦର୍ଶସ୍ଥାନୀୟ ହେବା ଉଚିତ, କାରଣ ଏହା ହେଉଛି ଗ୍ରାମବାସୀମାନଙ୍କପାଇଁ ଓ ସମାଜପାଇଁ ଏକ ଆଦର୍ଶ ତଥା ଶିକ୍ଷଣୀୟ ସ୍ଥାନ । ଏହା ଜନବସତି ବିଶେଷତଃ ଜନଗହଳଠାରୁ କିଛିଏ ଦୂରରେ ରହିବା ଉଚିତ । ଏହାର ଚତୁଃପାର୍ଶ୍ୱରେ କମ୍ପାଉଣ୍ଡର ଘେର ରହିବା ଦରକାର । ସ୍ଥାନଟି କିଛିଏ ଉଚ୍ଚ ଓ ଆୟତନ ଯଥେଷ୍ଟ ହେଲେ ଭଲ—ତାହାହେଲେ ପିଲମାନେ ସେମାନଙ୍କ ନିଜ ହତା ମଧ୍ୟରେ ଖେଳାଖେଳି କରିପାରିବେ । ଶ୍ରେଣୀଗୃହଗୁଡ଼ିକ ଯଥେଷ୍ଟ ଆଲୋକିତ ହେବା ଉଚିତ । ଝରକା ଓ କବାଟର ଅବସ୍ଥିତି ବାୟୁ ଚଳାଚଳର ସୁବିଧା ହୋଇପାରୁଥିବା ସ୍ଥାନରେ ରହିବା ଉଚିତ । ପିଲମାନଙ୍କର ଉଚ୍ଚତା ଅନୁଯାୟୀ ସେମାନଙ୍କର ବେଞ୍ଚ୍ ଓ ଡେସ୍କ ଇତ୍ୟାଦି ପ୍ରସ୍ତୁତ ହେବା ଆବଶ୍ୟକ । ଶ୍ରେଣୀର ସବୁପିଲ ସୁବିଧାରେ ଦେଖିପାରିବାଭଳି ସ୍ଥାନରେ କଳାପଟା ରହିବା ଉଚିତ । ବିଦ୍ୟାଳୟରେ ପିଇବାପାଣି ଯୋଗାଣ ତଥା ପୁଅଝିଅମାନଙ୍କପାଇଁ ଭିନ୍ନ ଭିନ୍ନ ପାଇଖାନା ଓ ପରିସ୍ରାପର ବ୍ୟବସ୍ଥା ରହିବା ନିହାତି ଆବଶ୍ୟକ ।

ସ୍ୱାସ୍ଥ୍ୟଗଠନ ତଥା ସ୍ୱାସ୍ଥ୍ୟର ଉନ୍ନତି ନିମିତ୍ତ ପିଲମାନଙ୍କର ନିୟମିତ ସ୍ୱାସ୍ଥ୍ୟ ପରୀକ୍ଷା, ସ୍ୱାସ୍ଥ୍ୟର ବ୍ୟତିକ୍ରମ ଘଟିଲେ ତା'ର ଚିକିତ୍ସା ଓ ପୁଷ୍ଟିକର ଖାଦ୍ୟ ଯୋଗାଣର ବ୍ୟବସ୍ଥା ଦରକାର । ସ୍ୱାସ୍ଥ୍ୟପରୀକ୍ଷା କେବଳ ବିଦ୍ୟାଳୟର ଛାତ୍ରଛାତ୍ରୀଙ୍କପାଇଁ ସୀମିତ ରହିବା ଉଚିତ ନୁହେଁ, ଶିକ୍ଷକ ଓ ବିଦ୍ୟାଳୟର ଅନ୍ୟାନ୍ୟ କର୍ମଚାରୀମାନଙ୍କ ପାଇଁ ମଧ୍ୟ ଏହାର ବ୍ୟବସ୍ଥା ରହିବା ଉଚିତ । ଉକ୍ତ ପରୀକ୍ଷାପାଇଁ ସବୁ ସମୟରେ ଡାକ୍ତରର ଆବଶ୍ୟକତା ନାହିଁ । ଶ୍ରେଣୀ ଶିକ୍ଷକମାନେ ଏ କାମ ଚଳାଇପାରିବେ । ଡାକ୍ତରମାନେ କେବଳ ପିଲମାନଙ୍କୁ ସେମାନଙ୍କର ପ୍ରବେଶ ସମୟରେ ଓ ତା'ପରେ ପ୍ରତି ୪ ବର୍ଷରେ ଥରେ ଦେଖିଲେ ଯଥେଷ୍ଟ ହେବ ବୋଲି ସ୍ୱାସ୍ଥ୍ୟ କମିଟିଙ୍କର ମତ । ପ୍ରଥମ ସ୍ୱାସ୍ଥ୍ୟପରୀକ୍ଷାଟି ଭଲଭାବେ ହେବା ଉଚିତ । ଏଥିରେ ପିଲର ସାଧାରଣ ସ୍ୱାସ୍ଥ୍ୟ ସାଙ୍ଗକୁ ଦୃଷ୍ଟି, ଶ୍ରବଣ ତଥା ବାକ୍‌ଶକ୍ତିର ପରୀକ୍ଷା; ମଳ, ମୂତ୍ର ଏବଂ ରକ୍ତ ପରୀକ୍ଷା ଇତ୍ୟାଦି ହୋଇପାରିଲେ ଭଲ । ପୁଷ୍ଟିକର ଖାଦ୍ୟାଭାବଜନିତ ବେମାର ଓ କୃମିଜନିତ ରୋଗମାନଙ୍କ ପ୍ରତି ବିଶେଷଭାବରେ ଦୃଷ୍ଟିଦେବା ଉଚିତ । ଯକ୍ଷ୍ମାରୋଗ ନିର୍ଣ୍ଣୟପାଇଁ ଫଟୋ ଉଠାଇବା ଓ ରୋଗରୁ ରକ୍ଷାପାଇବା ନିମିତ୍ତ

ଟୀକା ଦେବାର ବ୍ୟବସ୍ଥା କରାଯାଇ ପାରନ୍ତେ ଖୁବ୍ ଭଲ । ବ୍ଲାକ୍‌ବୋର୍ଡ୍ ମଧ୍ୟ ନର୍ଦ୍ଦିଷ୍ଟ ଉପାୟରେ ବ୍ୟବହାର ହୋଇଥାଏ । ଏହି ପରୀକ୍ଷା ସମୟରେ ଛାତ୍ର ଛାତ୍ରୀଙ୍କର ପିତାମାତା ଓ ଶିକ୍ଷକ ଉପସ୍ଥିତ ରହିବା ବାଞ୍ଛନୀୟ । ଶିକ୍ଷକ ତଥା ଅନ୍ୟାନ୍ୟ କର୍ମଚାରୀଙ୍କପାଇଁ ଠିକ୍ ଏହି ବ୍ୟବସ୍ଥା କରାଯିବା ଉଚିତ । ପିଲାର ସ୍ୱାସ୍ଥ୍ୟପଞ୍ଜିକା ସେମାନଙ୍କ ବିଦ୍ୟାଳୟ-ରହଣି କାଳରେ ଶ୍ରେଣୀ-ଶିକ୍ଷକଙ୍କ ତତ୍ତ୍ୱାବଧାନରେ ରହିବା ଭଲ ।

ପିଲାମାନଙ୍କ ସ୍ୱାସ୍ଥ୍ୟ ପରୀକ୍ଷାରେ ଶିକ୍ଷକମାନେ ଏକ ମୁଖ୍ୟ ଭୂମିକା ଗ୍ରହଣ କରିପାରନ୍ତେ । କାରଣ ସେମାନେ ଦୈନିକ ପିଲାମାନଙ୍କୁ ଦେଖିପାରନ୍ତେ । କୌଣସି ପିଲାର ଚର୍ମରୋଗ, କାଣ ଓ ଜ୍ୱର ଇତ୍ୟାଦି ହେଲେ ତାହା ସେମାନେ ଅନାୟାସରେ ଲକ୍ଷ୍ୟ କରିପାରନ୍ତେ ଏବଂ ଆବଶ୍ୟକସ୍ଥଳେ ଚିକିତ୍ସାପାଇଁ ସେମାନଙ୍କୁ ଡାକ୍ତରଙ୍କ ପାଖକୁ ପଠାଇ ପାରନ୍ତେ । ଯେଉଁ ଡାକ୍ତର ଥିବା ସ୍ଥାନମାନଙ୍କରେ ବିଦ୍ୟାଳୟର ଶିକ୍ଷକମାନେ ଛୋଟ କାର୍ଯ୍ୟରେ ଖୁବ୍ ସାହାଯ୍ୟ କରିପାରନ୍ତେ । ଏଥିନିମିତ୍ତ ସେମାନଙ୍କୁ କେବଳ ସେମାନଙ୍କ ଶିକ୍ଷକ ତାଲିମ ପାଉଥିବା ଅବସ୍ଥାରେ କିଛି ଶିକ୍ଷା ଦିଆଯିବା ଦରକାର ।

ରୋଗହୀନ ପିଲା ଯେ ସ୍ୱାସ୍ଥ୍ୟବାନ୍ ଏ ଧାରଣା ଭୁଲ । ଯେଉଁ ପିଲାର ଦୈହିକ ସ୍ୱାସ୍ଥ୍ୟ ଭଲ ନୁହେଁ, ତାର ମାନସିକ ସ୍ୱାସ୍ଥ୍ୟ ଭଲ ହୋଇପାରେନା । କେଣୁ ଶିକ୍ଷାରେ ମଧ୍ୟ ତାର ପାରଦର୍ଶିତା ତଦନୁଯାୟୀ କ୍ଷୁଣ୍ଣହେବା ସ୍ୱାଭାବିକ । କେଣୁ ଦୈହିକ ସ୍ୱାସ୍ଥ୍ୟର ଉନ୍ନତ ନିମିତ୍ତ ଉପଯୁକ୍ତ ଖାଦ୍ୟ ବ୍ୟବସ୍ଥା ପ୍ରତି ଦୃଷ୍ଟି ଦିଆଯିବା ଉଚିତ । ଆମ ଦେଶର ବିଦ୍ୟାଳୟର ସ୍ୱାସ୍ଥ୍ୟ ପରୀକ୍ଷାରୁ ଜଣାଇଛି ଯେ ଏଠିକାର ପିଲାମାନେ ପୁଷ୍ଟିକର ଖାଦ୍ୟାଭାବଜନିତ ଅଧିକାଂଶ ରୋଗରେ ପ୍ରପୀଡ଼ିତ । ଆଉ ଏହି ରୋଗମାନ ବଶେଷତଃ ଶ୍ୱେତସାର, ଖାଦ୍ୟପ୍ରାଣ କ, ଖ ଓ ଗ ଏବଂ ଲୌହ ତଥା କ୍ୟାଲସିୟମ୍ ପ୍ରଭୃତ ଧାତବଦ୍ରବ୍ୟ ଇତ୍ୟାଦିର ଅଭାବରୁ ପରିଲକ୍ଷିତ ହୋଇଥାଏ । ସୁଖର କଥା ଯେ ମାଧ୍ୟାହ୍ନ ଭୋଜନ ଓ ପ୍ରଯୁକ୍ତ ପୁଷ୍ଟିସାଧନ କାର୍ଯ୍ୟକ୍ରମ (Applied Nutrition Programme) ଜରିଆରେ ଉପରୋକ୍ତ ଅସୁବିଧାମାନଙ୍କୁ କେତେକାଂଶରେ ଦୂରକରାଯାଇପାରୁଛି । ନର୍ଦ୍ଦିଷ୍ଟ ପୁଷ୍ଟି ସାଧନମାନଙ୍କ ଜରିଆରେ ଡାଲ୍ ପୋକଶିଆ, ଗଳଗଣ୍ଡ, ଅନ୍ଧାରକଣା ଓ ରକ୍ତହୀନତା ଇତ୍ୟାଦି ରୋଗମାନଙ୍କ କବଳରୁ ପିଲାମାନଙ୍କୁ ରକ୍ଷାକରାଯାଇପାରୁଛି । ତଥାପି ବର୍ତ୍ତମାନର ଏସବୁ ବ୍ୟବସ୍ଥା ସମୁଦ୍ରକୁ ଶଙ୍ଖ ପାଣିଭଳି ଅବସ୍ଥାରେ ଅଛି । ଏହି ବ୍ୟବସ୍ଥାର ଉନ୍ନତ କରାଗଲେ ବିଦ୍ୟାଳୟର ସ୍ୱାସ୍ଥ୍ୟସେବା ନିଶ୍ଚିତଭାବରେ ଉନ୍ନତ ହୋଇପାରିବ ।

ଅଧିକାଂଶ ଛୁଆଁରୋଗକୁ ଟୀକା ଜରିଆରେ ନିୟନ୍ତ୍ରଣ, ଏପରିକି ନିରାକରଣ କରାହେବ । ବସନ୍ତ ରୋଗର ଉଲୁଣି, ଧନୁଷ୍ଟଙ୍କାର, ଯକ୍ଷ୍ମା, ଡିପ୍‌ଥେରିଆ ଓ ପକ୍ଷାଘାତ ଇତ୍ୟାଦି ରୋଗମାନଙ୍କୁ ଟୀକା ଜରିଆରେ ପିଲାମାନଙ୍କ ବିଦ୍ୟାଳୟ ଜୀବନକାଳ ମଧ୍ୟରେ ପୂର୍ଣ୍ଣ ନିୟନ୍ତ୍ରଣ କରାଯାଇ ପାରିବ । କୁଷ୍ଠରୋଗର ଟୀକା ମଧ୍ୟ ନିକଟ ଭବିଷ୍ୟତରେ ଏହି ରୋଗ ନିବାରଣରେ ସାହାଯ୍ୟ କରିବ । ଟୀକାନେବାର ତଥ୍ୟାବଳୀ ପିଲାପାଖରେ ବା

ଶିକ୍ଷକଙ୍କ ପାଖରେ ରହିବା ଓ ଉଚ୍ଚ ଶିକ୍ଷାପାଇଁ ଯିବା ସମୟକୁ ଏସବୁ ତଥ୍ୟ ପିଲ ସାଥିରେ ନେବା ଉଚିତ ।

ଛାତ୍ରର ଦୈହିକ ଅବସ୍ଥା ତା'ର ମାନସିକ କାର୍ଯ୍ୟକୁ ଯେପରି ପ୍ରଭାବିତ କରେ, ମାନସିକ ଅବସ୍ଥା ମଧ୍ୟ ଠିକ୍ ସେହିପରି ଦୈହିକ ଅବସ୍ଥା ତଥା ତା'ର ଶିକ୍ଷାକୁ ପରୋକ୍ଷରେ ପ୍ରଭାବିତ କରେ । ବ୍ୟକ୍ତିଗତ କାରଣରୁ କେତେକ ପିଲ ସମସ୍ତଙ୍କ ସହ ମିଳାମିଶି ଚଳିପାରନ୍ତି ନାହିଁ । ଅନ୍ୟ କେତେକ ପିଲ ସେମାନଙ୍କର ଦୈନନ୍ଦିନ କର୍ତ୍ତବ୍ୟ ପାଳନରେ ବହୁତ ହେଳା କରନ୍ତି । ପିତାମାତାଙ୍କ ଅଯତ୍ନରେ ଅଭାବରୁ କେତେକ ପିଲ ନାନା କୁଅଭ୍ୟାସର ମଧ୍ୟ ଶିକାର ହୋଇଥାନ୍ତି । ତେଣୁ ଏହିଭଳି ପିଲମାନଙ୍କୁ କୁପ୍ରଭାବରୁ ରକ୍ଷାକରି ଠିକ୍ ବାଟରେ ଚଳାଇବା ଓ ଉପଯୁକ୍ତ ନାଗରିକ କରି ଗଢ଼ିବାର ଗୁରୁଦାୟିତ୍ୱ ଏବଂ ଶିକ୍ଷକମାନଙ୍କୁ ବହନ କରିବାକୁ ପଡ଼ିବ । 'ବିଦ୍ୟାଳୟରେ ସ୍ୱାସ୍ଥ୍ୟସେବା' କାର୍ଯ୍ୟକ୍ରମରେ ପିଲମାନଙ୍କର ମାନସିକ ସ୍ୱାସ୍ଥ୍ୟପାଇଁ ସୁବ୍ୟବସ୍ଥା ବି ଦରକାର । ଏଥିପାଇଁ ବିଦ୍ୟାଳୟର କାର୍ଯ୍ୟକ୍ରମକୁ ଏପରି କରିବାକୁ ହେବ ଯେପରି ପିଲମାନଙ୍କର ମାନସିକ ପରିଶ୍ରମ ଓ ମାନସିକ ବିଶ୍ରାମ ପରସ୍ପର ସହ ଅଦଳବଦଳ ହୋଇ ଚାଲିପାରିବ । ପାଠପଢ଼ା ପାଇଁ ପିଲ ଯେପରି ଅତି ବ୍ୟସ୍ତ ବା ବିରକ୍ତ ନହୁଏ, ତା' ଶିକ୍ଷକଙ୍କୁ ଦେଖିବାକୁ ପଡ଼ିବ । ପିଲମାନଙ୍କ ମଧ୍ୟରେ ଧନୀ, ଦରିଦ୍ର ବା ନିର୍ଦ୍ଧନ, ସବର୍ଣ୍ଣ, ଅସବର୍ଣ୍ଣ, ମେଧାବୀ ବା ମେଧାହୀନ ଭେଦଭାବ ଯେପରି ଉଦ୍ରେକ ନହୁଏ, ତା' ପ୍ରତି ଶିକ୍ଷକମାନଙ୍କୁ ସଚେତନ ରହିବାକୁ ପଡ଼ିବ । ପିଲମାନଙ୍କ ଗୁଣ ତଥା ମନୋବୃତ୍ତିକୁ ବୁଝି ସେମାନଙ୍କୁ ଶିକ୍ଷା ଦେବାର ବ୍ୟବସ୍ଥା କରିବାକୁ କର୍ମ ପରାମର୍ଶଦାତା ତଥା ମନସ୍ତତ୍ତ୍ୱବିତ୍‌ମାନଙ୍କର ସାହାଯ୍ୟର ଆବଶ୍ୟକତା ଆଜିକାଲି ଅନୁଭୂତ ହେଉଛି । ଏକଥା ସମ୍ଭବ ହୋଇପାରିଲେ ବିଦ୍ୟାଳୟରେ ସ୍ୱାସ୍ଥ୍ୟସେବାର ଏହା ହେବ ଏକ ନୂତନ ଦିଗନ୍ତ ।

ଦନ୍ତରୋଗ ବିଦ୍ୟାଳୟର ଛାତ୍ରମାନଙ୍କର ଏକ ସାଧାରଣ ଅପତ୍ତି । ତେଣୁ ବର୍ଷକୁ ଅନ୍ତତଃ ଥରଟିଏ ଦନ୍ତ ପରୀକ୍ଷା ଏକାନ୍ତ ଆବଶ୍ୟକ । ବିଦ୍ୟାଳୟମାନଙ୍କରେ ସ୍ୱାସ୍ଥ୍ୟଶିକ୍ଷାକୁ ବାଧ୍ୟତାମୂଳକ କରିବା ଉଚିତ । ଏହି ଶିକ୍ଷା କେବଳ ପରୀକ୍ଷାପାଇଁ ଉଦ୍ଦିଷ୍ଟ ନହୋଇ ବ୍ୟବହାର ଓ ଅଭ୍ୟାସରେ ପରିଣତ ହେବା ବାଞ୍ଛନୀୟ । ଏହାଦ୍ୱାରା ବ୍ୟକ୍ତିଗତ ପରିଷ୍କାର ପରିଚ୍ଛନ୍ନତା, ପରିବେଶର ସୁରକ୍ଷା ତଥା ସାମାଜିକ ସ୍ୱାସ୍ଥ୍ୟ କାର୍ଯ୍ୟରେ ଯୋଗଦାନ ଇତ୍ୟାଦି ପିଲମାନଙ୍କୁ ଶିଖାଇବା ଉଚିତ । ବିଦ୍ୟାଳୟର ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମରେ ଶିକ୍ଷକଙ୍କର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ ବୋଲି ଆମେ ଜାଣୁ । ତେଣୁ ଶିକ୍ଷକମାନେ ଏ ସମ୍ପର୍କରେ ଆବଶ୍ୟକ ଶିକ୍ଷା ପାଇବା ଦରକାର । ସେମାନେ ଛାତ୍ରମାନଙ୍କୁ ଉପଯୁକ୍ତ ଶିକ୍ଷା ଦେଲେ ଛାତ୍ରମାନେ ଉକ୍ତ ଶିକ୍ଷାର ଜ୍ଞାନ ନିଜ ନିଜ ଘରେ ପ୍ରଚାର କରିପାରିବେ ଓ ନିଷ୍ଠିତଭାବରେ ସମାଜର ଅବୈତନିକ ସ୍ୱାସ୍ଥ୍ୟ କର୍ମୀବୃନ୍ଦଭଳି କାମ କରିପାରିବେ ।

ଏହି ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମ କାହାର ଜଣଙ୍କର ନୁହେଁ ବା ଜଣେ କେହି ଏ କାର୍ଯ୍ୟସବୁ କରି ନପାରେ । ବିଦ୍ୟାଳୟର ଶିକ୍ଷକଙ୍କ ଉପରେ ଉକ୍ତ ଦାୟିତ୍ୱ ଦେଇ ନିଶ୍ଚିନ୍ତ ରହିବା ଠିକ୍

ନୁହେଁ । ଉକ୍ତ କାର୍ଯ୍ୟ ପିତାମାତା, ଶିକ୍ଷକ, ସ୍ୱାସ୍ଥ୍ୟ କର୍ମୀବୃନ୍ଦ ତଥା ସମାଜର ମୁରବିମାନଙ୍କ ପରସ୍ପର ସହଯୋଗ ଫଳରେହିଁ ସମ୍ଭବ ହୋଇପାରିବ । ଏମାନଙ୍କ ମଧ୍ୟରେ ସମନ୍ୱୟ ନରହିଲେ ଉକ୍ତ କାର୍ଯ୍ୟ ସୁଚାରୁରୂପେ ସାଧିତ ହୋଇପାରିବନି । ବିଭିନ୍ନ ଦେଶରେ ଏ କାର୍ଯ୍ୟ ଭିନ୍ନ ଭିନ୍ନ ପନ୍ଥାଦ୍ୱାରା ହୋଇଥାଏ । କେଉଁଠାରେ ଏହା ସ୍ୱାସ୍ଥ୍ୟ ବିଭାଗର ଦାୟିତ୍ୱ ତ କେଉଁଠାରେ ଶିକ୍ଷାବିଭାଗର । ମାତ୍ର ସ୍ୱାସ୍ଥ୍ୟବିଭାଗର ଦାୟିତ୍ୱରେ, ଶିକ୍ଷା ବିଭାଗର ସମର୍ଥନରେ ଓ ବିଦ୍ୟାଳୟରେ ଶିକ୍ଷକମାନଙ୍କ ଅକୁଣ୍ଠ ସହାୟତାରେହିଁ ଉକ୍ତ କାର୍ଯ୍ୟକ୍ରମ ଫଳପ୍ରଦ ହୋଇପାରିବ । ବିଦ୍ୟାଳୟରେ ସଫଳ ସ୍ୱାସ୍ଥ୍ୟ ସେବାହିଁ ଏକ ନୀରୋଗ ସୁସ୍ଥ ସମାଜର ମୂଳଦୁଆ, ଏଥିରେ ସନ୍ଦେହ ନାହିଁ ।



# ମା' ଓ ଶିଶୁର ଯତ୍ନ

[ ପ୍ରସବ ଘଟଣା ଅପେକ୍ଷା ପ୍ରସବୋତ୍ତର ଅବ୍ୟବସ୍ଥାର ଅଧିକ ମର୍ମସ୍ପର୍ଶୀ । ଶୁଣନ୍ତୁ— ]

ବହୁ ଚେଷ୍ଟାକରି ସତ୍ତ୍ୱେ ବାବୁ ସେ ପ୍ରସୂତିଟିର ପ୍ରାଣ ରକ୍ଷା କରିପାରିଲେ ନାହିଁ । ୩ ବର୍ଷ ବୟସ ବଢ଼ାଇ, ୧୮ କହି, ୧୫ ବର୍ଷରେ ବିବାହ କରାଇଦେଇଛୁ ମଧ୍ୟ ପାଠ । ଝିଅ ଘିଅ ରହିଲେ ପରେ ରକ୍ଷଣୀୟ ହୋଇଯିବ । ବଡ଼ାକରିଦେଲେ । 'ଦେଲା ଦାଗ ହେଲା ପାର'—ତା'ପରେ ପରୁଆ କିଏ ? ମଧ୍ୟ କନ୍ୟାର ଦାୟିତ୍ୱ ସବା ସ୍ୱାମୀରେ ଦେଇ ନିଶ୍ଚିନ୍ତ । ହେଲେ ସବାଟା ଅଭିମ, ଅଳପୁଅ । ତା'ଛଡ଼ା ଯାହା କିଛି ଦିନେ ଦୁଇ ଦିନରେ ପାଏ ସେ ସବୁଯାଏ ଖଟିରେ, ନହେଲେ କୁଅରେ । ରକ୍ତଶୀ କଥା ସେ ଭୁଲିଯାଏ । ସେ କ'ଣ ଖାଏ, କ'ଣ ପିନ୍ଧେ, ପର କପର ସ୍ୱାସ୍ଥ୍ୟ ସବାର ନଜର ନାହିଁ । କିନ୍ତୁ ସବା ଅନ୍ୟ ବାଟରେ ଯଉଛି ନାହିଁ, ୩ ବର୍ଷରେ ତା'ର ଗୋଟିଏ ଛୁଆ ଜନ୍ମହୋଇ ମରିଛି, ଆଉ ରକ୍ତର ଏ ଦ୍ୱିତୀୟ ଥର । ବହୁ କଷ୍ଟରେ ସେ ଆସିଥିଲା ଡାକ୍ତରଖାନାକୁ ବଞ୍ଚିବାର ଆଶା ନେଇ । ପାଖରେ ପଇସାଟିଏ ନାହିଁ । ଦେହରେ ଟୋପାଏ ରକ୍ତ ନାହିଁ । ଅଳ୍ପ ସମୟ ପରେ ଅଚେତ ହୋଇପଡ଼ିଲା । ପାଖରେ କେହି ନାହିଁ ତା' ମୁହଁରେ ପାଣିଟୋପାଏ ଦେବାକୁ ତଥାପି ସଂବାଦବାକୁ ଲାଗିପଡ଼ିଲେ । ହେଲେ ମନ ମାନିଥିଲୁ ବଞ୍ଚାଇବାର ଶକ୍ତି କ'ଣ ତାଙ୍କର ଅଛି ? ରକ୍ତଶୂନ୍ୟ ମଳମୂତ୍ର ସହିତ ସମାନ ନୁହେଁ ତ ଆଉ କ'ଣ ? ରକ୍ତରେ ହିମୋଗ୍ଲୋବିନ୍ ୬ ଗ୍ରାମ, ରକ୍ତଚାପ କମି ୫୦।୩୦ରେ ପହଞ୍ଚିଥିଲାଣି, ନିଶ୍ୱାସ ନେଇପାରୁନି । ତା' ଉପରେ ୧୦୫ ଡିଗ୍ରୀ ଜର । ଏ ପାଖରେ ଛୁଆ ମା' ପେଟରେ ମରିଗଲାଣି । ଆଉ ସେ ବଞ୍ଚିବ ବା କିପରି ?

ଏହିପରି ଗାଁଗହଳରେ ବହୁତ ମହିଳା ମୃତ୍ୟୁ ମୁଖରେ ପଡ଼ନ୍ତି । ଭାରତରେ ମାତୃ ମୃତ୍ୟୁହାର ଡେନ୍‌ମାର୍କ ତୁଳନାରେ ୮୦ ଗୁଣ ଏବଂ ବିଲାତ ତୁଳନାରେ ୬୦ ଗୁଣ ଅଧିକ । ଶିଶୁ ମୃତ୍ୟୁହାର ବିଷୟରେ ନକହିଲେ ଭଲ । ମାତୃଗର୍ଭରେ, ଜନ୍ମହେବାର ଅଳ୍ପ ସମୟ ମଧ୍ୟରେ ଏବଂ ବର୍ଷେ ଛ'ମାସ ବଞ୍ଚିବାପରେ କେତେକ ଶିଶୁ ମୃତ୍ୟୁବରଣ କରିଥାଆନ୍ତି । ଆହୁରି ଦୁଃଖର ବିଷୟ ଯେ, ଜନ୍ମହେବାର ୪ ବର୍ଷ ମଧ୍ୟରେ କେତେକ ଶିଶୁ ମଧ୍ୟ ବିଭିନ୍ନ ବ୍ୟାଧିରେ ମୃତ୍ୟୁବରଣ କରିଥାଆନ୍ତି । ତୃତୀୟ ରାଷ୍ଟ୍ରମାନଙ୍କ ମଧ୍ୟରେ ଏହି ଅପମୃତ୍ୟୁହାର ସର୍ବାଧିକ ଏବଂ ଭାରତରେ ଏହାର ସଂଖ୍ୟା କମ୍ ନୁହେଁ ।

ବହୁତ ବିଷୟ କହିବାକୁ ଅଛି, ସବୁକଥାକୁ ଅନ୍ୟ ଉପରେ ଛାଡ଼ିଦେଲେ ସମସ୍ୟାର ସମାଧାନ ହୋଇପାରିବନାହିଁ । ନିଜର ପରିବାରର ଯତ୍ନ ନେବା ଏବଂ ସୁସ୍ଥ ଜୀବନ

ଯାପନ କରିବା ଏକ ଉତ୍ତମ ଉପାୟ । ସରକାରଙ୍କ ପକ୍ଷରୁ ବିଭିନ୍ନ ପଦକ୍ଷେପ ନିଆଯାଇ ପଞ୍ଚବାର୍ଷିକ ଯୋଜନା ମାଧ୍ୟମରେ ସ୍ୱାସ୍ଥ୍ୟରକ୍ଷା ନିମିତ୍ତ ଉପଯୁକ୍ତ ବନ୍ଦୋବସ୍ତ କରାଯାଇଅଛି ।

ପରିବାର କଲ୍ୟାଣ ଯୋଜନା ମାଧ୍ୟମରେ ପରିବାର ନିୟନ୍ତ୍ରଣ, ମାତା ଏବଂ ଶିଶୁ-ମାନଙ୍କର ସ୍ୱାସ୍ଥ୍ୟରକ୍ଷା, ପ୍ରତିଷେଧକ ବ୍ୟବସ୍ଥା, ପୁଷ୍ଟିକର ଖାଦ୍ୟ ଯୋଗାଣ ଇତ୍ୟାଦି କେତେକ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମକୁ ଆଖି ଆଗରେ ରଖାଯାଇ ଉତ୍ତମ ସୁସ୍ଥ ଜୀବନ ଯାପନ ନିମିତ୍ତ ବ୍ୟବସ୍ଥା କରାଯାଇଅଛି । ଜନସାଧାରଣ ଏହି ସୁଯୋଗର ଉପଯୁକ୍ତ ବ୍ୟବହାର କରିପାରିଲେ ବହୁତ ଉପକାର ପାଇପାରିବେ । ବିଶେଷତଃ ଗ୍ରାମ ଅଞ୍ଚଳରେ ଅଶିକ୍ଷିତ ବ୍ୟକ୍ତି ଏ ବିଷୟରେ ଜାଣିପାରୁନାହିଁ । ସରକାରଙ୍କ ପକ୍ଷରୁ ପ୍ରଚାର ନିମିତ୍ତ ମଧ୍ୟ ଉପଯୁକ୍ତ ପଦକ୍ଷେପ ନିଆଯାଉଅଛି । କିନ୍ତୁ ଶିକ୍ଷାର ଅଭାବ ଏବଂ କେତେକ କ୍ଷେତ୍ରରେ ନିଯୁକ୍ତ କର୍ମଚାରୀମାନଙ୍କର ଆନ୍ତରିକତାର ଅଭାବ ଏ ଯୋଜନାର ଅସଫଳତା ନିମିତ୍ତ ଦାୟୀ ।

ସାଧାରଣତଃ କେତେକ କ୍ଷେତ୍ର ସାଧାରଣ ମହିଳାମାନେ ଜାଣିବା ଉଚିତ ଏବଂ ସୁସ୍ଥ ଜୀବନ ଯାପନ ନିମିତ୍ତ ନିମ୍ନଲିଖିତ ବିଷୟଗୁଡ଼ିକ ପାଳିବା ନିହାତି ଦରକାର । ସେଗୁଡ଼ିକ ହେଲା—

୧—ଯୌନ ଶିକ୍ଷା
୨—ବିବାହ ବୟସ ସୀମିତ ରଖିବା
୩—ପରିବାର ନିୟନ୍ତ୍ରଣ
୪ ପ୍ରସବ ଏବଂ ପ୍ରସୂତି ସମ୍ବନ୍ଧରେ ଧାରଣା
୫—ମାତା ଏବଂ ଶିଶୁର ଯତ୍ନ
୬—ଶିଶୁର ସ୍ୱାସ୍ଥ୍ୟର କ୍ରମବିକାଶ
୭—ପ୍ରତିଷେଧକ ବ୍ୟବସ୍ଥା
୮—ସାମାଜିକ ରକ୍ଷଣାବେକ୍ଷଣ

**ଯୌନ ଶିକ୍ଷା**—ଏ ବିଷୟ ସମ୍ପର୍କରେ ବହୁତ ବ୍ୟକ୍ତିମାନେ ଶୁଣିଲେ ନାକ ଟେକିବେ, ଅଥବା ହସିବେ, କିନ୍ତୁ ଏହେ ଜାଣିବା ଉଚିତ । କଥାରେ ଅଛି କେଳେହୁଁ ସାବଧାନ ହେଲେ ବିପଦ ରହିବ ନାହିଁ । ସଂଯମ, ଉପଯୁକ୍ତ ସମୟରେ ସହବାସ କରିବା, ପାଶବିକ ପ୍ରବୃତ୍ତିରୁ ଦୂରେଇରହିବା, ୧୬ ବର୍ଷରୁ କମ୍ ବୟସରେ ବାଳିକାର ବିବାହ ନକରିବା ଏବଂ ପ୍ରାକୃତିକ ଉପାୟରେ ଗର୍ଭସଞ୍ଚାରକୁ ବନ୍ଦ କରିବା ଇତ୍ୟାଦି ଯୌନ ଶିକ୍ଷାର ଅନ୍ତର୍ଗତ । ସ୍ତ୍ରୀ-ପୁରୁଷ ଉଭୟଙ୍କର ଶାରୀରିକ, ମାନସିକ ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟିରଖିବା, ବଳାତ୍କାର ଅତ୍ୟାଚାରଠାରୁ ଦୂରେଇ ରହିବା, ସ୍ତ୍ରୀର ବ୍ୟକ୍ତିତ୍ୱକୁ ଉପଯୁକ୍ତ ସମ୍ମାନ ଦେବା ଆବଶ୍ୟକ । ସ୍ତ୍ରୀ ଏକ ବିଳାସବସ୍ତୁ ନୁହେଁ । ସେ ବି ଜଣେ ମଣିଷ, ତା'ର ଜୀବନ ଅଛି, ଭଲ ମନ୍ଦ ଜାଣିବାର ଅଧିକାର ଅଛି ଏବଂ ପରିବାରର ଜଣେ ସଦସ୍ୟା—ଏ ବିଷୟ ପୁରୁଷ-ପ୍ରଧାନ ସମାଜରେ ଆମେମାନେ ଭୁଲିଯାଉ ।

ବିବାହ ବୟସ ସୀମିତ ରହିବା ମଧ୍ୟ ଆବଶ୍ୟକ । ସରକାର ମଧ୍ୟ ଆଇନ ପ୍ରଣୟନଦ୍ୱାରା ଯୁବତୀମାନଙ୍କ ପକ୍ଷରେ ୧୮ ବର୍ଷ ଏବଂ ଯୁବକମାନଙ୍କ ନିମିତ୍ତ ୨୧ ବର୍ଷ ନିର୍ଦ୍ଧାରଣ କରିଅଛନ୍ତି । ପ୍ରକୃତ ପକ୍ଷରେ ଆମ ସମାଜ ତାଙ୍କମାନଙ୍କୁ ଉପଯୁକ୍ତ ସମ୍ମାନ ଦେଇପାରି-ନାହିଁ । 'ଦେଲ ତାଙ୍କ ଦେଲ ପାଣି' ମତରେ ଆମ ଗ୍ରାମାଞ୍ଚଳର ଜନସାଧାରଣ ବର୍ତ୍ତମାନ ବି ବିଶ୍ୱାସ କରୁଅଛନ୍ତି । ଝିଅ ତ ଅଲୋଡ଼ା ବସ୍ତୁ ନୁହେଁ—ପଛେ ବାପଘରେ ତା'ର ସ୍ଥାନ ପୁଅଠାରୁ ଆଇନତଃ କମ୍ ନୁହେଁ । ଯଦି ବୋଝ ବୋହିପାରୁ ନ ଥିଲ ତେବେ ମୁଣ୍ଡେଇବାକୁ କହିଥିଲା କିଏ ? ଏହାଛଡ଼ା ୧୮ ବର୍ଷରୁ କମ୍ ବୟସରେ କୌଣସି ଯୁବତୀର ଶାରୀରିକ, ମାନସିକ ବୃଦ୍ଧି ମା' ହେବା ନିମିତ୍ତ ଉପଯୁକ୍ତ ନୁହେଁ । ୧୮ ବର୍ଷରେ ଦୁଇଟି ସନ୍ତାନର ମାତା ହେବାକୁ ଯାଇ ରମଣୀର ଯେଉଁ ଅବସ୍ଥା—ଗାଁଗହଳରେ ଯେହେତୁ ଶହ ଶହ ରମଣୀ ଯେ ମୃତ୍ୟୁମୁଖରେ ପଡ଼ନ୍ତି, ତା'ର ହିସାବ ରଖୁଛି ବା କିଏ ?

ଗର୍ଭଧାରଣ, ପ୍ରସବ ସମୟରେ ଯନ୍ତ୍ରଣା ଏବଂ ପ୍ରସବଜନିତ ଆନୁଷଙ୍ଗିକ ଦୁର୍ଘଟଣା କମ୍ ବୟସର ମାତାମାନଙ୍କ ଜୀବନକୁ ବିପଦରେ ପକାଇଥାଏ । ଶିଶୁର ଉପଯୁକ୍ତ ଶାରୀରିକ ମାନସିକ ବୃଦ୍ଧି ନହେବା ଫଳରେ ପରବର୍ତ୍ତୀ ସମୟରେ ଶିଶୁ ମୃତ୍ୟୁର ଶିକାର ହୁଏ, ଅଥବା ବଞ୍ଚିରହିଲେ ମଧ୍ୟ ସେ ଶିଶୁର ଉପଯୁକ୍ତ ଶାରୀରିକ ଓ ମାନସିକ ବୃଦ୍ଧି ଅଭାବରୁ ସୁସ୍ଥ ଜୀବନ ଯାପନ କରିପାରିବ ନାହିଁ । ଆଜିର ଦୁନିଆରେ ବଞ୍ଚିରହିବାକୁ ସଂଗ୍ରାମ ଦରକାର । ସେ ଶିଶୁ ଦାରଣନ ହେଲେ ଜୀବନରେ ଉନ୍ନତ କରିପାରିବ ନାହିଁ । କେତେକ କ୍ଷେତ୍ରରେ ବିକଳାଙ୍ଗ, ମାନସିକ ବ୍ୟାଧିଗ୍ରସ୍ତ ଶିଶୁ ଅଳ୍ପ ବୟସରେ ଗର୍ଭବତୀ ହୋଇଥିବା ମା'ମାନେ ଜନ୍ମଦେଇ ଥାଆନ୍ତି, ଫଳରେ ସାରା ଜୀବନ ସେ ପିତାମାତା ଏବଂ ସମାଜର ବୋଝ ହୋଇ ରହିଥାଆନ୍ତି । ନିଜେ କଷ୍ଟ ପାଇବା ସହିତ ଅନ୍ୟମାନଙ୍କର ଜୀବନକୁ ମଧ୍ୟ ହତାଶ କରିଦିଅନ୍ତି ।

ଆଜିର ଦୁନିଆରେ ଗୁଣର ଆଦର ସଂଖ୍ୟାଠାରୁ ଅଧିକ । ପ୍ରଶ୍ନ ହେଉଛି ଗୋଟିଏ ବା ଦୁଇଟି ସୁସ୍ଥ ଶିଶୁ ନିଶ୍ଚିତ ଭାବରେ ୭ ବା ୧୦ଟି ଦୁର୍ବଳ ଶିଶୁଠାରୁ ଭଲ । ପ୍ରଶ୍ନ ହେଉଛି ଆମେ ବଞ୍ଚିବାକୁ ହେଲେ ଭଲଭାବରେ ବଞ୍ଚିବା ଦରକାର । ସମୟରେ ସାବଧାନ ନହୋଇ ଶିଶୁ ସଂଖ୍ୟା ବୃଦ୍ଧି କରି ନିଜେ ତ ଅସୁବିଧାରେ ପଡ଼ିବା, ତା'ଛଡ଼ା ଅନ୍ୟମାନଙ୍କର ଯତ୍ନ ନ ନେଇ ସେମାନଙ୍କୁ ବିକଳାଙ୍ଗ କରିବା ।

କର୍କଟ ରୋଗ ବିଷୟରେ ସମସ୍ତେ ଉଣାଅଧିକେ ଜାଣିଥିବେ । ତା'ର ଚିକିତ୍ସା ନିର୍ଦ୍ଧାରଣ ହୋଇନାହିଁ । ଏ ରୋଗ ଧୀରେଧୀରେ ମଣିଷକୁ ଯନ୍ତ୍ରଣା ଦେଇ ମାରିଥାଏ, ଫଳରେ ମୃତ୍ୟୁ ଅଧିକ କଷ୍ଟଦାୟକ ହୁଏ । ଦୁଃଖର ବିଷୟ, ଅଳ୍ପ ବୟସରେ ଗର୍ଭଧାରଣ ଏବଂ ଅଧିକ ସନ୍ତାନ ଜନ୍ମ ଫଳରେ ସ୍ତ୍ରୀମାନଙ୍କର ଜନନେନ୍ଦ୍ରିୟରେ ଉକ୍ତ ବ୍ୟାଧି ଅଧିକ ଦେଖାଦିଏ । ଭାରତରେ ଏହି କର୍କଟ ରୋଗ ବର୍ତ୍ତମାନ ମୁଖ୍ୟସ୍ଥାନ ଅଧିକାର କରିଅଛି । ନିଜେ ନଜାଣି କେତେକ ମରନ୍ତି, ଜାଣିଲେ ମଧ୍ୟ କର୍କଟ ରୋଗ କବଳରୁ ରକ୍ଷା ନାହିଁ । ସୁତରାଂ ଜାଣି ବୁଝି ସ୍ୱେଚ୍ଛାକୃତ ବିପଦକୁ କାହିଁକି ବରଣ କରିବ ?

ପରିବାର ନିୟନ୍ତ୍ରଣ – ଏ ବିଷୟରେ ଅଲୋଚନା ହୋଇଛି; କିନ୍ତୁ ମନେରଖିବାକୁ ହେବ ଯେ, "ଶ୍ରେଷ୍ଠ ପରିବାର ସୁଖୀ ପରିବାର" ।

**ପ୍ରସବ ଏବଂ ପ୍ରସୂତୀ ସମ୍ବନ୍ଧରେ ପଦେ—**

ଗର୍ଭବତୀ ମହିଳାମାନଙ୍କର ଯତ୍ନନେବା କେବଳ ଯେ ପରିବାରର କର୍ତ୍ତବ୍ୟ ତା' ନୁହେଁ ସରକାରଙ୍କ ତରଫରୁ ମଧ୍ୟ ଗ୍ରାମାଞ୍ଚଳରେ ଏଥିପାଇଁ ବ୍ୟାପକ ବ୍ୟବସ୍ଥା କରାଯାଇଛି । ମହିଳା ସ୍ୱାସ୍ଥ୍ୟକର୍ମୀମାନେ ସର୍ବଦା ଗର୍ଭବତୀମାନଙ୍କର ଯତ୍ନନେଉଥାନ୍ତି । ସ୍ୱାସ୍ଥ୍ୟକେନ୍ଦ୍ର ଉପକେନ୍ଦ୍ର-ମାନଙ୍କରେ ସେମାନେ ନିଯୁକ୍ତ ହୋଇଥାଆନ୍ତି ଏବଂ ଅତି କମ୍‌ରେ ୫ଥର ସେମାନେ ପ୍ରତ୍ୟେକ ଗର୍ଭବତୀ ମହିଳାଙ୍କୁ ପରିଦର୍ଶନ କରିବା ନିମିତ୍ତ ନିର୍ଦ୍ଦେଶ ଅଛି । ପ୍ରଥମଥର ୭-୮ ସପ୍ତାହ ସମୟରୁ, ୨ୟ ପରିଦର୍ଶନ ୨୦ରୁ ୨୨ ସପ୍ତାହରେ, ୩ୟ ୪ର୍ଥ ଏବଂ ପଞ୍ଚମ ପରିଦର୍ଶନ ବିଶେଷତଃ ୨୮-୩୨ ସପ୍ତାହ, ୩୪-୩୬ ସପ୍ତାହ ଏବଂ ୩୮ ସପ୍ତାହରେ କରାଯାଇଥାଏ ।

ଉକ୍ତ ପରିଦର୍ଶନ ସମୟରେ ମହିଳାମାନଙ୍କୁ କେବଳ ଯେ ପରୀକ୍ଷା କରାଯାଏ ତା ନୁହେଁ, ନିଜ ସ୍ୱାସ୍ଥ୍ୟପ୍ରତି ନଜରଦେବା, ପୁଷ୍ଟିକର ଖାଦ୍ୟ ଖାଇବା ଏବଂ କୌଣସି ଅନୁଚିତ ବ୍ୟାଧି ଦେଖାଦେଲେ ତା'ର ଚିକିତ୍ସା ନିମିତ୍ତ ଉପଯୁକ୍ତ ପଦକ୍ଷେପ ନେବା ମହିଳା ସ୍ୱାସ୍ଥ୍ୟକର୍ମୀ-ମାନଙ୍କର କର୍ତ୍ତବ୍ୟ । ବିଶେଷତଃ ଗର୍ଭଧାରଣ ସମୟରେ ଅତ୍ୟଧିକ ରକ୍ତଚାପ ବୃଦ୍ଧି, ମୁଣ୍ଡ ଘୂରାଇବା, ପାଦ ଫୁଲିବା, ରକ୍ତହୀନତା, ରକ୍ତସ୍ରାବ, କାମଳରୋଗ, ମଧୁମେହ ଇତ୍ୟାଦି ରୋଗ ଦେଖାଦେଇଥାଏ । କେତେକ କ୍ଷେତ୍ରରେ ରୋଗ ଖାଦ୍ୟର ଅଭାବରୁ ଦେଖାଦିଏ ଏବଂ ଅନ୍ୟ କେତେକ କ୍ଷେତ୍ରରେ ରୋଗୀର ବ୍ୟାଧି ପୂର୍ବରୁ ରହିଥିଲେ ତାହାର ଉପସର୍ଗ ଅଧିକ ଭାବରେ ବୃଦ୍ଧି ପାଇଥାଏ । ଅତଏବ ମହିଳା କର୍ମୀବୃନ୍ଦମାନେ ରୋଗର ଲକ୍ଷଣ ଦେଖି ଗର୍ଭବତୀ ସ୍ତ୍ରୀମାନଙ୍କର ଚିକିତ୍ସା କରିଥାଆନ୍ତି ଏବଂ ସେମାନେ ନପାରିଲେ ନିକଟସ୍ଥ ସ୍ୱାସ୍ଥ୍ୟକେନ୍ଦ୍ରକୁ ଯାଇ ଡାକ୍ତରଙ୍କ ପରାମର୍ଶ ନେବାକୁ ଉପଦେଶ ଦେଇଥାଆନ୍ତି । ସେମାନଙ୍କର ଉପଦେଶ ମାନିବା ସମସ୍ତଙ୍କର କର୍ତ୍ତବ୍ୟ ।

ଶିଶୁ ମାତୃମଙ୍ଗଳ ଯୋଜନା ମାଧ୍ୟମରେ ଗର୍ଭବତୀ ମହିଳାମାନଙ୍କୁ ଔଷଧ, ପୁଷ୍ଟିକର ଖାଦ୍ୟ ଯୋଗାଇଦେବା ନିମିତ୍ତ ବନ୍ଦୋବସ୍ତ ମଧ୍ୟ କରାଯାଇଛି । ଏହି ସୁଯୋଗର ଉପଯୋଗ ସମସ୍ତେ କରିବା ଉଚିତ । ଏହା ବ୍ୟତୀତ ଗର୍ଭବତୀ ମହିଳାମାନଙ୍କୁ ଧନୁଷ୍ଟଙ୍କାର ପ୍ରତିଷେଧକ ଟୀକା ୩ ଗୋଟି ଦିଆଯାଇଥାଏ । ପ୍ରଥମଟି ୧୬ରୁ ୨୦ ସପ୍ତାହରେ, ଦ୍ୱିତୀୟଟି ୨୦ରୁ ୨୨ ସପ୍ତାହରେ ଏବଂ ତୃତୀୟଟି ୩୬ରୁ ୩୮ ସପ୍ତାହରେ ଦିଆଯାଏ । ଏହା ମା' ଏବଂ ଶିଶୁ ଉଭୟଙ୍କୁ ଧନୁଷ୍ଟଙ୍କାରରୁ ରକ୍ଷାକରିଥାଏ ।

ଅବଶ୍ୟ ପୁଷ୍ଟିକର ଖାଦ୍ୟ ଖାଇବା ନିମିତ୍ତ ଉପଦେଶ ଦେବାର କୌଣସି ମୂଲ୍ୟ ନାହିଁ । କିନ୍ତୁ ଖାଦ୍ୟର ପୁଷ୍ଟି କେବଳ ମାଂସ, ଅଣ୍ଡା ଅଥବା ଦାମିକା ଫଳରେ ସୀମିତ ନୁହେଁ । ସାଧାରଣ ପରିବାରର ଲୋକମାନଙ୍କ ପକ୍ଷରେ ଦୁଗ୍ଧ ବଦଳରେ ଡାଲିଜାତୀୟ ଖାଦ୍ୟ ଏବଂ

ଅନ୍ୟାନ୍ୟ ଫଳ ବଦଳରେ ଗାଁଗହଳରେ ମିଳୁଥିବା କଦଳୀ, ଅମୃତଭଣ୍ଡା, ପିଜୁଳି, ବିଭିନ୍ନ ଜାତିର କୋଳି, ଅମ୍ଳ ଲେମ୍ବୁ ଯଥେଷ୍ଟ ଉପାଦାନ ଯୋଗାଇଥାଏ। ନଈ, ଗାଡ଼ିଆରୁ ମିଳୁଥିବା ଚୂନାମାଛ, ସହରର କୁକୁଡ଼ା ଅଥବା ଖାସି ମାଂସଠାରୁ କୌଣସିଥିରେ କମ୍ ନୁହେଁ। ଗେଣ୍ଡା, କୋଚଇ, ଶାମୁକା, ଚୂନାମାଛ ଅତ୍ୟନ୍ତ ଉପାଦେୟ ଖାଦ୍ୟ ଯୋଗାଇ-ଥାଏ। ସୁତରାଂ ସେମାନେ ସେହି ଖାଦ୍ୟ ଖାଇ ଉପଯୁକ୍ତ ଶକ୍ତି ଆହରଣ କରିପାରିବେ। ଶାଗ, କଞ୍ଚା ଅମୃତଭଣ୍ଡା, କଦଳୀ, ଛତୁ ଆଦି ପନିପରିବା ଗ୍ରାମାଞ୍ଚଳରେ ସହଜରେ ମିଳିଥାଏ ଏବଂ ଉକ୍ତ ପଦାର୍ଥରେ ଖାଦ୍ୟସାର ଏବଂ ପୁଷ୍ଟିଉପାଦାନ ବେଶୀପରିମାଣରେ ଅଛି। ସେ ସବୁ ଖାଇବା ନିତାନ୍ତ ଦରକାର। ଗ୍ରାମାଞ୍ଚଳରେ ବାସ୍ତବିକ୍, ପଖାଳର ଗୁଣ ସମସ୍ତେ ଜାଣନ୍ତି, କିନ୍ତୁ ଭୁଲ୍ ଧାରଣାର ବଶବର୍ତ୍ତୀ ହୋଇ ଗର୍ଭବତୀ ମହିଳାମାନେ ଏହାକୁ ବ୍ୟବହାର କରି ନ ଥାନ୍ତି। ଅତଏବ ଏହି ଖାଦ୍ୟପଦାର୍ଥ ବ୍ୟବହାର କଲେ କେବଳ ମହିଳାମାନେ ନିଜର ସ୍ୱାସ୍ଥ୍ୟରକ୍ଷା କରିବା ସହିତ ନିଜର ଶିଶୁର ଉପଯୁକ୍ତ ବୃଦ୍ଧି କରାଇପାରିବେ।

ପ୍ରସବ ଯନ୍ତ୍ରଣା ଅବଶ୍ୟ ଅତ୍ୟଧିକ କଷ୍ଟଦାୟକ; କିନ୍ତୁ ଆରମ୍ଭରୁ ସତର୍କତା ନେଲେ, ଡାକ୍ତର କିମ୍ବା ଧାଈମାନଙ୍କଦ୍ୱାରା ପରୀକ୍ଷା କରାଇ ପ୍ରତିଷେଧକ ବ୍ୟବସ୍ଥା କରାଯାଇଥିଲେ କଷ୍ଟ କ୍ରମଶଃ ଲାଘବହେବ ଏବଂ ସୁରକ୍ଷାରେ ପ୍ରସବ ହୋଇପାରିବ। ଆଜିକାଲି ଗ୍ରାମ-ମାନଙ୍କରେ ସ୍ୱାସ୍ଥ୍ୟସେବା ସରକାରଙ୍କ ତରଫରୁ ଯୋଗାଇଦିଆଯାଇଛି। ଏହା ବ୍ୟତୀତ କେତେକ ଗ୍ରାମାଞ୍ଚଳରେ ତାଲିମପ୍ରାପ୍ତ ଧାତ୍ରୀ ଓ ଡାକ୍ତରମାନେ ଅଛନ୍ତି, କିନ୍ତୁ ଏ ସବୁର ସୁଯୋଗ ନେବା ନିମିତ୍ତ ଜନସାଧାରଣ କୁଣ୍ଠାବୋଧ କରନ୍ତି। ସବୁଠାରୁ ଦୁଃଖଦାୟକ ହେଲା ଯେ ଏ ପର୍ଯ୍ୟନ୍ତ ମଧ୍ୟ ତଥାକଥିତ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ନିଜର ଅନ୍ତଃସ୍ୱତ୍ତ୍ୱାମାନଙ୍କର ପ୍ରସବ ନିମିତ୍ତ ପୁରୁଷ ଡାକ୍ତରଙ୍କ ସାହାଯ୍ୟ ନେବାକୁ କୁଣ୍ଠାବୋଧ କରିଥାଆନ୍ତି। ଅବଶ୍ୟ ଅଭାବ ଅସୁବିଧା ଏବଂ ଅଜ୍ଞତା ଯୋଗୁ ଗରିବଲୋକମାନଙ୍କୁ ଡାକ୍ତରୀ ଚିକିତ୍ସା ମିଳିନଥାଏ, କିନ୍ତୁ କ୍ରମଶଃ ଏ ଭ୍ରାନ୍ତଧାରଣା ଦୂରହେଉଛି।

ଅତୀତରେ ପିଲାଦିନେ ଗାଁଗହଳରେ ଧାଈମାନେ ପ୍ରସବ କରାଉଥିବାର ଦୃଶ୍ୟ ଦେଖିଛୁ। ସେ ମର୍ମନ୍ତୁଦ ଚିତ୍କାର, ଯନ୍ତ୍ରଣା, କଷ୍ଟ ବର୍ତ୍ତମାନ ମନେପଡ଼ିଗଲେ ଦେହ ଶିହରିଉଠେ। ସବୁଠାରୁ ଦୁଃଖଦାୟକ ହେଲା ନୂଆ କୁଡ଼ିଆ ବାଡ଼ିରେ ଢିଙ୍କିଶାଳ, ଗୁହାଳ ଅଥବା ଅରମା, ଅନ୍ଧକାର ଜାଗା ଯେଉଁଠାକୁ କେହି ଯାଉନଥିବେ ସେଠାରେ ପ୍ରସବ କରାଯାଏ। କୋର୍ ଜବରଦସ୍ତି କରି ସ୍ତ୍ରୀଲୋକଙ୍କୁ ବସାଇଦିଆଯାଏ ଏବଂ ତଳପେଟରେ ଲୁଗା ବାନ୍ଧିଦେଇ ଧାଈ ପ୍ରସବ କରାଉଥିବାର ଦୃଶ୍ୟ ଆଜି ବି ମନେପଡ଼ିଲେ ଭୟଲାଗେ। କି ମର୍ମନ୍ତୁଦ ଦୃଶ୍ୟ! ଏପରି କଷ୍ଟ ସହ୍ୟକରିନପାରି ଅତ୍ୟଧିକ ଯନ୍ତ୍ରଣା ଅଥବା ରକ୍ତସ୍ରାବ ହେବା ଫଳରେ କେତେ ମହିଳା ଅସମୟରେ ମୃତ୍ୟୁମୁଖରେ ପଡ଼ିଥାଆନ୍ତି। ଜଙ୍ଗଲରେ ଅଥବା ଘର ବାହାରେ ଅନ୍ୟ ମହିଳାମାନଙ୍କର ଚିତ୍କାର ପରିବେଶକୁ ଅଶାନ୍ତ କରିଦିଏ। ଅତି କଷ୍ଟରେ ପ୍ରସବ ହେଲାପରେ ମା'ଅ ପିଲାଙ୍କ ଅସୁଖ ବଢ଼ିଯାଏ। ଘରଭିତରର ଝିଅବୋହୂ ମହିଳାମାନଙ୍କ ଛୁଆମଣିଷିଆରେ ସେ ଶୋଇରହେ। ପାଖରେ କାଠଗଡ଼ ନିଆଁ ଲଗିଥାଏ ଏବଂ ଝରକା ନଥିବା ସେ ଗୁମୁଟି ଘର

ଧୂଆଁରେ ପୂର୍ଣ୍ଣ। ଏ ପରିସ୍ଥିତିରେ କୌଣସି ସୁସ୍ଥବ୍ୟକ୍ତି ରହିବା ଅସମ୍ଭବ। କିନ୍ତୁ ଅତ୍ୟନ୍ତ ଦୁର୍ବଳ, ରକ୍ତହୀନ, ଆସନ୍ନପ୍ରସବା ମହିଳା କି କଷ୍ଟରେ ବହିରହେ ସେସବୁ ଚିନ୍ତାର ବାହାରେ। ପ୍ରସୂତିର ଖାଦ୍ୟ ନକହିଲେ ଭଲ। ସାଇପଡ଼ିଶାର ଅଥବା ନିଜ ଘରର ଶାଶୁ, ଅଈବୁଢ଼ୀ ଖାଦ୍ୟସୂଚୀ ପ୍ରସ୍ତୁତ କରନ୍ତି। ବେଶୀହେଲେ ୨୫ ଗ୍ରାମ ବୁଜୁଳାର ଭାତ, ଗରମ ତୋରାଣି, ପିଙ୍ଗା ବାଇଗଣ, କଦଳୀ, ଅମୃତଭଣ୍ଡା – କିନ୍ତୁ ପରିମାଣ ବେଶୀ ହୋଇପାରିବନାହିଁ। ବେଶୀ ହେଲେ ଝାଡ଼ା ବାନ୍ତି ହେବାର ସମ୍ଭାବନା ଅଛି। ମାଛ, ମାଂସ, ଅଣ୍ଡା କଥା ନାହିଁ। ଏ ଯନ୍ତ୍ରଣା ଯମଯନ୍ତ୍ରଣାଠାରୁ କମ୍ ନୁହେଁ। ତଥାପି ସେମାନେ ବଞ୍ଚନ୍ତି। ବୋଧହୁଏ ପିଲାଦିନରୁ ଏସବୁ ଲକ୍ଷ୍ୟକରି ଗାଁ-ଗହଳର ଝିଅ ବୋହୂମାନେ ମାନସିକ ପ୍ରସ୍ତୁତ କରିଥାଆନ୍ତି, କିନ୍ତୁ ସହି ନପାରିଲାବେଳକୁ ଜନ୍ମ-ବହୁତ ମୃତ୍ୟୁମୁଖରେ ପଡ଼ିଥାଆନ୍ତି। ଯେ ମରିଗଲା ତା'ର ଭଲ ପୁରିଲା—ବଞ୍ଚିଗଲା ସ୍ତ୍ରୀମାନେ ଭବିଷ୍ୟତରେ ମା'ମାନଙ୍କୁ ଏମିତିବହୁତ ଉପଦେଶ ଦେଇ-ଥାଆନ୍ତି। ପ୍ରଶ୍ନହେଲା ଅଶିକ୍ଷିତା ଧାଇ ପ୍ରସବ କରାଇପାରିଲେ ସେହି ଅବସ୍ଥାରେ ଡାକ୍ତରଙ୍କ ସାହାଯ୍ୟ ନେଲେ ସେ ସଫଳତାର ସହିତ ଚିକିତ୍ସା କରି ମା' ଏବଂ ଶିଶୁର ଜୀବନ ବଞ୍ଚାଇ ପାରିବେ କି? ଯଦି ନପାରିଲେ ଡାକ୍ତରଙ୍କର ବଦ୍‌ନାମ।

ଏ ତ ଗଲା ମାତାଙ୍କର ଦୁଃଖ, ବର୍ତ୍ତମାନ ନବଜାତ ଶିଶୁ ବିଷୟକୁ ଆସନ୍ତୁ। ଶିଶୁରନାଭି କାଟିବା ଦରକାର—ଘରେ ପଡ଼ିଥିବା କଳଙ୍କିଲଗା ଛୁରି ଅଥବା ଖରପାତଅ, ତାହା ନ ମିଳିଲେ ପୋଖରୀ କୂଳରେ ପଡ଼ିଥିବା ଅସନା ଶାମୁକା ନାହି କାଟିବା ନିମିତ୍ତ ବ୍ୟବହାର କରାଯାଏ। କାରଣ ସେ ଜିନିଷଟି ଅଛୁଆଁ ହୋଇଗଲା, ଘରେ ପଶିବ ନାହିଁ ବା ଅନ୍ୟ ବ୍ୟବହାର ହେବନାହିଁ। ନାହିକଟା ସରିଲା ପରେ ରକ୍ତସ୍ରାବ ବନ୍ଦ କରିବାକୁ ନାହି ବାନ୍ଧିବା ଅପରାଧ, ଚୂଲିର ପାଉଁଶ ଅଥବା ନଈବାଲି କଟା ନାହି ଉପରେ ପକାଇଦିଆଯାଏ। ଫଳରେ ଧନୁଷ୍ଟଙ୍କାର ଇତ୍ୟାଦି ମାରାତ୍ମକ ବ୍ୟାଧିରେ ଶିଶୁର ଅକାଳମୃତ୍ୟୁ ହୁଏ। ଏସବୁକୁ ମନେପକାଇଲେ ଲୋମ ଟାଙ୍କୁରି ଉଠେ। ଆଜିର ଉନ୍ନତ ଯୁଗରେ ଆମେ ସାମାନ୍ୟ ସ୍ୱାସ୍ଥ୍ୟରକ୍ଷା ନିୟମ ଜାଣିପାରିନାହୁଁ—ଏହାଠାରୁ ଅଧିକ ଦୁଃଖକର କ'ଣ ଅଛି?

ବର୍ତ୍ତମାନ ସମୟ ଆସିଛି, ଏ ଅନ୍ଧବିଶ୍ୱାସ ଦୂରକରି ଉପଯୁକ୍ତ ସୁସ୍ଥ ବାତାବରଣ ମଧ୍ୟରେ ଜୀବନ ଯାପନ କରିବା ଆବଶ୍ୟକ। ଶିକ୍ଷିତା ଧାଇ ଅଥବା ଡାକ୍ତରଙ୍କଦ୍ୱାରା ପ୍ରସବ କରାଇଲେ କେବଳ ମାତା ଏବଂ ଶିଶୁର ଜୀବନ ରକ୍ଷାହେବ ତା' ନୁହେଁ, ଅତି ଅଳ୍ପ ସମୟ ମଧ୍ୟରେ ସେମାନେ ସୁସ୍ଥ ହୋଇପାରିବେ।

ପ୍ରସବ ପରେ ବିଭିନ୍ନ ଉପସର୍ଗ ଦେଖାଦେଇଥାଏ। ଯଥା—ଅତ୍ୟଧିକ ରକ୍ତସ୍ରାବ, ଜ୍ୱର, ଶ୍ୱାସ ନେବାରେ କଷ୍ଟ, ହଠାତ୍ ରକ୍ତଚାପ କମିଯିବା ଏବଂ ଗର୍ଭାଶୟର କ୍ଷତ ଭଲ ନହେବା ଫଳରେ ତଥା ଉପଯୁକ୍ତ ଚିକିତ୍ସାର ଅଭାବରୁ ଗର୍ଭାଶୟରେ ସଂକ୍ରମଣ ରୋଗ ଦେଖାଦିଏ। ଏପରି ଉପସର୍ଗ ମଧ୍ୟ ମାତାର ଜୀବନକୁ ବିପନ୍ନ କରିଥାଏ। କେବଳ ଶିଶୁ ଜନ୍ମ ହୋଇଗଲେ ସରିଲା ତା' ନୁହେଁ; ମାତାର ଯତ୍ନ ଏହି ସମୟରେ ଅତ୍ୟନ୍ତ ଦରକାର ହୋଇପଡ଼େ। ଉପଯୁକ୍ତ ବିଶ୍ରାମ, ଚିକିତ୍ସା ଏବଂ ପୁଷ୍ଟିକର ଖାଦ୍ୟ ନିତାନ୍ତ ଦରକାର।

ସେକ, ତୋରଣି ଅଥବା ବାଇଗଣ ପିଠାରେ ଯଥେଷ୍ଟ ଆହାର ମିଳିନଥାଏ । ମାଛ, ମାଂସ ଅଣ୍ଡା, ତଟକା ଫଳ, ପନିପରିବା, ଦୁଧ ମାତା ନିମିତ୍ତ ଦରକାର । ନଚେତ ରକ୍ତହୀନତା ଓ ସଂକ୍ରମଣ ବ୍ୟାଧିରେ ଜୀବନ ହାନି ଘଟିବାର ଆଶଙ୍କା ଅଧିକ । ମନେରଖିବା ଉଚିତ, ମାତା ଭବିଷ୍ୟତରେ ଉପଯୁକ୍ତ ସୁସ୍ଥ ଜୀବନ ଯାପନ ନକଲେ ତା'ର ସନ୍ତାନକୁ ପାଳନ କରିବ ବା କିପରି ? ଗୋ-ଗୁହାଳରେ ଗାଈଟିଏ ଜନ୍ମକଲେ ସ୍ୱାମୀ ତା'ର ସେତିକି ଯତ୍ନ ନେଇଥାଏ, କେତେକ କ୍ଷେତ୍ରରେ ଦେଖାଯାଇଛି ଯେ ନିଜ ସ୍ତ୍ରୀର ବି ସେତିକି ଯତ୍ନ ନେଇନଥାଏ । ଗାଈ କ୍ଷୀର ଦେବ; କିନ୍ତୁ ମାତା ଯେ ସନ୍ତାନକୁ କ୍ଷୀର ଦେଇ ବଞ୍ଚାଇବ ସେ କଥା ଭୁଲିଯିବା ଅନୁଚିତ । ଡାକ୍ତରଙ୍କଦ୍ୱାରା ତନଖି କରାଇବା ଏବଂ ମାତାର ଉପଯୁକ୍ତ ଯତ୍ନ ନେବା ସର୍ବାଦୌ କର୍ତ୍ତବ୍ୟ ।

## ମାତା ଏବଂ ଶିଶୁର ଯତ୍ନ—

ପ୍ରସବ ପରେ ଶିଶୁର ଲାଳନପାଳନ ଭାର ମାତା ଉପରେ ବିଶେଷ ଭାବରେ ପଡ଼ିଥାଏ । ବିଶେଷତଃ ଶିଶୁ ପ୍ରଥମ କେତେମାସ ମା'ର କ୍ଷୀର ଉପରେ ନିର୍ଭର କରିଥାଏ । ଏହି କ୍ଷୀର ଶିଶୁ ପକ୍ଷରେ ନିତାନ୍ତ ଦରକାର ।

ମାତାର କ୍ଷୀରରେ ଶିଶୁ ନିମିତ୍ତ ଉପଯୁକ୍ତ ପରିମାଣରେ ଶ୍ୱେତସାର, ପୁଷ୍ଟିସାର, ଚର୍ବି, ଖାଦ୍ୟସାର, ଲବଣ ଇତ୍ୟାଦି ରହିଅଛି । ଏହା ବ୍ୟତୀତ ଶିଶୁକୁ ରକ୍ଷା କରିବା ନିମିତ୍ତ ପ୍ରତିଷେଧକ ପଦାର୍ଥ ଉପଯୁକ୍ତ ପରିମାଣରେ ମଧ୍ୟ ଅଛି । ଜନ୍ମହେବା ପରେ ଶିଶୁ ନିଜକୁ ପ୍ରାକୃତିକ ପରିବେଶରୁ ଉପଯୁକ୍ତ ଭାବରେ ରକ୍ଷା କରିବାକୁ ସକ୍ଷମ ନୁହେଁ ଏବଂ ନିଜର ପ୍ରତିରୋଧକ ଶକ୍ତି ମଧ୍ୟ ତା'ର ଶରୀରରେ ନଥାଏ । କିନ୍ତୁ ମାତୃସ୍ତନ୍ୟର ଏହି ପ୍ରତିରୋଧକ ଶକ୍ତି ଶିଶୁକୁ ବଞ୍ଚାଇ ରଖିବାକୁ ଯଥେଷ୍ଟ ଶକ୍ତି ଯୋଗାଇଥାଏ । ସୁସ୍ଥମାତାର ଶରୀରର ତାପମାତ୍ରା ଶିଶୁର ଶରୀର ତାପମାତ୍ରା ସହିତ ସମାନ ଥିବାରୁ କ୍ଷୀର ଉପଯୁକ୍ତ ପରିମାଣରେ କାର୍ଯ୍ୟ କରିଥାଏ । ଏହା ବ୍ୟତୀତ କୌଣସି ବାହ୍ୟ ପଦାର୍ଥର ସଂସ୍ପର୍ଶରେ ନ ଆସିବା ଫଳରେ ଅନ୍ୟ କୌଣସି ରୋଗ ଶିଶୁକୁ ହେବାର ଭୟ ମଧ୍ୟ ନଥାଏ । ଅବଶ୍ୟ କେତେକ କ୍ଷେତ୍ରରେ ପ୍ରଥମ ଗର୍ଭାବସ୍ଥାରେ ଉପଯୁକ୍ତ ପରିମାଣର କ୍ଷୀର ହୋଇନଥାଏ । ତଟକା ଫଳ ପରିବା, ଗାଈ କ୍ଷୀର, ଭିଟାମିନ୍ ଏବଂ ଡାକ୍ତରଙ୍କ ପରାମର୍ଶ ଅନୁସାରେ ଔଷଧ ବ୍ୟବହାର କଲେ ଏହି ଅସୁବିଧା ଅନାୟାସରେ ଦୂର ହୋଇଥାଏ । ଶିକ୍ଷିତ ସମାଜରେ ଏବଂ ଅର୍ଦ୍ଧଶିକ୍ଷିତ ପଲ୍ଲୀ ଅଞ୍ଚଳରେ ନିଜର ସୌନ୍ଦର୍ଯ୍ୟ ହାନିହେବା ଭୟରେ ମାତାମାନେ ସ୍ତନ୍ୟପାନ କରାଇବା ନିମନ୍ତେ ରାଜି ହୋଇ ନଥାନ୍ତି । କୌଣସି ସୌନ୍ଦର୍ଯ୍ୟ ହାନି ହେବାର ସମ୍ଭାବନା ନାହିଁ ବରଂ ଦେଖାଯାଇଛି ଯେ ଏହି ସ୍ତନ୍ୟପାନ କରାଉନଥିବା ମହିଳାମାନେ ଅତ୍ୟଧିକ ପରିମାଣରେ ସ୍ତନ କର୍କଟ ରୋଗର ଶିକାର ହୋଇଥାଆନ୍ତି । ଶିଶୁକୁ ସ୍ତନ୍ୟପାନ ଅନ୍ତତଃ ପକ୍ଷେ ୪ ମାସ ପର୍ଯ୍ୟନ୍ତ କରାଇଲାପରେ, ତରଳ ଖାଦ୍ୟ ଯଥା—ପରିବା ସିଝା, ପାଚିଲା କଦଳୀ, ଡାଲିପାଣି, ଅଙ୍କୁରିତ ଇତ୍ୟାଦି ଅଭ୍ୟାସ କରାଇ ଖାଇବାକୁ ଦେବା ଉଚିତ ।

ଷଷ୍ଠ ମାସ ହୋଇଗଲେ ସ୍ତନ ବା ଫିଡ଼୍, ଗରବା ଶିଝା, ଅଣ୍ଡା ଇତ୍ୟାଦି କ୍ରମଶଃ ଅଧିକ ଦିନମାନଙ୍କରେ ଦେଇ ସ୍ତନ ପାନ କ୍ରମଶଃ ବନ୍ଦ କରିଦେବା ଉଚିତ । ଏହି ଉପାୟରେ କ୍ରମେ ଶିଶୁ ମାତା ଉପରେ ନିର୍ଭର ନକରି ନିଜେ ଖାଦ୍ୟ ବ୍ୟବହାର କରି ସୁସ୍ଥ ଜୀବନ ଯାପନ କରିବାକୁ ସକ୍ଷମ ହୋଇଥାଏ ।

ଖାଦ୍ୟ ବ୍ୟତୀରେକେ ବିଭିନ୍ନ ପ୍ରକାର ସଂକ୍ରାମକ ବ୍ୟାଧିରୁ ରକ୍ଷା ନିମିତ୍ତ ଉପଯୁକ୍ତ ପ୍ରତିଷେଧକ ବ୍ୟବସ୍ଥା ମଧ୍ୟ କରିବିବା ଉଚିତ । ବିଶେଷତଃ ଜନ୍ମହେବାର ତୃତୀୟ, ଚତୁର୍ଥ ଏବଂ ପଞ୍ଚମ ମାସରେ ମାସକୁ ଗୋଟିଏ କରି ଡ଼ିଃ ପିଃ ଟିଃ ଇଂଜେକ୍ସନ୍ ନିଆଗଲେ ଭବିଷ୍ୟତରେ ଡିପ୍‌ଥେରିଆ ବା ଗଳଗଣ୍ଡ, ପ୍ରଦାହ, ଧନୁଷ୍ଟଙ୍କାର, କମାକାଶ ଇତ୍ୟାଦିରୁ ଶିଶୁ ରକ୍ଷାପାଇଥାଏ । ଏହା ବ୍ୟତୀରେକ ପୋଲିଓ ଏବଂ ଯକ୍ଷ୍ମା ନିମିତ୍ତ ପ୍ରତିଷେଧକ ବ୍ୟବସ୍ଥା ୬ରୁ ୯ ମାସ ମଧ୍ୟରେ ତଥା ମିଳିମିଳାର ପ୍ରତିଷେଧକ ବ୍ୟବସ୍ଥା ମଧ୍ୟ ଏହି ସମୟ ମଧ୍ୟରେ କରାଯାଇଥାଏ । ଅନ୍ତ୍ରିକ ଜ୍ୱର ଏବଂ ଅନ୍ୟାନ୍ୟ ସଂକ୍ରାମକ ବ୍ୟାଧିରୁ ରକ୍ଷା ନିମିତ୍ତ ମଧ୍ୟ ପ୍ରତିଷେଧକ ଟୀକାର ବ୍ୟବସ୍ଥା ଅଛି । ଗ୍ରାମାଞ୍ଚଳରେ ଜନସାଧାରଣ ଏହାର ସୁଯୋଗ ନେଇପାରନ୍ତି ନାହିଁ । ପ୍ରତ୍ୟେକ ପ୍ରାଥମିକ ଚିକିତ୍ସାଳୟରେ ଏହି ସବୁ ଟୀକା ମିଳିଥାଏ ଏବଂ ବିନା ମୂଲ୍ୟରେ ଯୋଗାଇଦିଆଯାଇଥାଏ । ଏହି ଟୀକା ନେବାର ବିଧି ମଧ୍ୟ ଡାକ୍ତର ଜଣାଇଥାଆନ୍ତି ।

ଶିଶୁର ଶାରୀରିକ ଏବଂ ମାନସିକ ସ୍ୱାସ୍ଥ୍ୟପ୍ରତି ଉପଯୁକ୍ତ ପନ୍ଥା ମଧ୍ୟ ଅଛି । ଶିଶୁର ପୂର୍ଣ୍ଣ ମାନସିକ ବିକାଶ ପ୍ରତି ନଜର ଦେବା ପ୍ରତ୍ୟେକ ପିତାମାତାଙ୍କର କର୍ତ୍ତବ୍ୟ । କୌଣସି କାରଣରୁ ଶିଶୁ ଅନ୍ୟମାନଙ୍କ ତୁଳନାରେ ଯଥେଷ୍ଟ କର୍ମକ୍ଷମ ନହେବା, ସ୍ୱାସ୍ଥ୍ୟ ଭଲ ନରହିବା ଏବଂ ତାର କ୍ରମବିକାଶ ଉପଯୁକ୍ତ ସ୍ତରରେ ନହେଲେ ଡାକ୍ତରଙ୍କ ପରାମର୍ଶ ନେବା ଉଚିତ । ସମାଜରେ ଉପଯୁକ୍ତ ନାଗରିକ ହିସାବରେ ଶିଶୁକୁ ଗଢ଼ିବା କେବଳ ପିତାମାତାଙ୍କର କର୍ତ୍ତବ୍ୟ ନୁହେଁ; ବିଭିନ୍ନ ସଂସ୍ଥା ତରଫରୁ ଏବଂ ସରକାରଙ୍କ ତରଫରୁ ମଧ୍ୟ ପଦକ୍ଷେପ ନିଆଯାଇଥାଏ । କିନ୍ତୁ ଏ ସବୁର ସୁଯୋଗ ନେବା ଗ୍ରାମବାସୀମାନଙ୍କ ପକ୍ଷରେ ସମ୍ଭବ ନୁହେଁ । ତଥାପି ଡାକ୍ତରଖାନାରେ ଥିବା କର୍ମରତ ଡାକ୍ତର ଏବଂ ଅନ୍ୟାନ୍ୟ କର୍ମଚାରୀମାନଙ୍କ ସହିତ ସମ୍ପର୍କ ସ୍ଥାପନ କରିଲେ ବହୁତ କିଛି ସାହାଯ୍ୟ ମିଳିଥାଏ । ଏସବୁ ସୁଯୋଗର ଉପଯୁକ୍ତ ସଦ୍‌ବ୍ୟବହାର କରିବା ସମସ୍ତଙ୍କର କର୍ତ୍ତବ୍ୟ ।

# ଗ୍ରାମ୍ୟ ଆମୋଦପ୍ରମୋଦ

[ ମଣିଷ ଥରେ ମାଙ୍କଡ଼ଠାରି ଏକ କର୍ମକ୍ଳାନ୍ତ ଜୀବନକୁ କର୍ମ-ଚଞ୍ଚଳ କରୁଥିଲା । ଆଜି କି ତ'ଣ ଆମେ ଗାଁବାଲାଙ୍କୁ ତାହା ବନ୍ଦ କରିବାକୁ ଦେବା ? ]

ମାନବ-ସମାଜ ଦେଶ ଓ ଜାତିର ସର୍ବଶ୍ରେଷ୍ଠ ସମ୍ପଦ । ଯେଉଁ ଦେଶର ମାନବ ଯେତେ ବୁଦ୍ଧିମାନ୍, ଯେତେ ଉନ୍ନତ ଚିନ୍ତାଧାରା ସମ୍ପନ୍ନ, ସେ ଦେଶ ସେତିକି ଉନ୍ନତ, ସେତିକି ସମୃଦ୍ଧ । ସେଥିପାଇଁ ଉର୍ବର ମସ୍ତିଷ୍କସମ୍ପନ୍ନ ମାନବ-ସମାଜ ଦେଶ ଓ ଜାତିର ସର୍ବୋତ୍କୃଷ୍ଟ ସମ୍ବଳ ଓ ସମସ୍ତ ପ୍ରକାର ସମୃଦ୍ଧିର ଭିତ୍ତିଭୂମି । ଦେଶକୁ ଉନ୍ନତ ଓ ସମୃଦ୍ଧିଶାଳୀ କରି ଗଢ଼ିତୋଳିବାକୁ ହେଲେ ଉନ୍ନତ ମସ୍ତିଷ୍କବିଶିଷ୍ଟ ମାନବର ସୃଷ୍ଟି ଏକାନ୍ତ ଆବଶ୍ୟକ । ମନୀଷୀଙ୍କ ମତ ଅନୁସାରେ ମାନବର ମନ ଉର୍ବର ମୃତ୍ତିକା ତୁଲ୍ୟ । ଏହାକୁ ଅଧିକ ଚାଷଯୋଗ କଲେ ଅଧିକ ଫଳ ମିଳିଥାଏ । ମାତ୍ର ସଦାସର୍ବଦା କାର୍ଯ୍ୟରତ ହୋଇ ମନୁଷ୍ୟ ଶାନ୍ତି ପାଇପାରେ ନାହିଁ । ଯନ୍ତ୍ର ମୁତାବକ କାର୍ଯ୍ୟକର ଯନ୍ତ୍ରରେ ପରିଣତ ହୋଇଯାଏ । ଏକ ପ୍ରକାର କାର୍ଯ୍ୟରେ ସେ ବିରକ୍ତି ଅନୁଭବ କରେ । ମନ ଅସୁସ୍ଥ ହୋଇପଡ଼େ । ଫଳରେ ସେ କାର୍ଯ୍ୟ କରିବାର ସମସ୍ତ ପ୍ରକାର ଉତ୍ସାହ ଓ ସ୍ପୃହା ହରାଇବସେ । ସେଥିପାଇଁ ଇଂଲଣ୍ଡରେ ଏକ ପ୍ରବଚନ ଅଛି—

"All work and no play
makes Jack a dull boy"

କର୍ମକ୍ଳାନ୍ତ ଜୀବନକୁ ବିଶ୍ରାମ ଦେବାର ଆବଶ୍ୟକତା ସେଥିପାଇଁ ଅପରିହାର୍ଯ୍ୟ ।

ପ୍ରାଗୈତିହାସିକ କାଳରୁ ମାନବ ନିଜର ମାନସିକ ସୁସ୍ଥତା ପାଇଁ ବିଭିନ୍ନ ପ୍ରକାର ପଦକ୍ଷେପ ଗ୍ରହଣ କରିଛି । ପୂର୍ବେ ଯେତେବେଳେ ସେ ଜଙ୍ଗଲରେ ରହି ଫଳମୂଳ ଖାଇ ଜୀବନ ଧାରଣ କରୁଥିଲା ସେତେବେଳେ ମଧ୍ୟ ସେ ନିଜକୁ ବିଶ୍ରାମ ଦେବାପାଇଁ ସୂର୍ଯ୍ୟାସ୍ତରୁ କିଛି ସମୟ ଓହରିଯାଇ ପ୍ରାକୃତିକ ସୌନ୍ଦର୍ଯ୍ୟ ଅବଲୋକନରେ ମଗ୍ନ ରହୁଥିଲା । ମାଙ୍କଡ଼ ପରି ଏ ଡାଳରୁ ସେ ଡାଳ ଡିଆଁ ଡେଇଁ କରି କର୍ମକ୍ଳାନ୍ତ ଜୀବନର ଅବସାଦକୁ ଭୁଲିଯାଉଥିଲା । ଏହିଭଳି ଛୋଟ ଛୋଟ ଆମୋଦପ୍ରମୋଦ କାର୍ଯ୍ୟ ସବୁ ତାକୁ କର୍ମଚଞ୍ଚଳ କରୁଥିଲା, ହୃଦୟରେ ଆନନ୍ଦଧାରା ସଞ୍ଚାର କରୁଥିଲା । କ୍ରମେ କ୍ରମେ କାଳର ପରିବର୍ତ୍ତନ ଅନୁସାରେ ମନୁଷ୍ୟର ଚିନ୍ତାଧାରା ପରିବର୍ତ୍ତିତ ହେଲା । ତତ୍‌ସହିତ ତା'ର କର୍ମମୟ ଜୀବନର ଅଭିବୃଦ୍ଧି ହେଲା । ଏହି ପରିପ୍ରେକ୍ଷୀରେ ଆନନ୍ଦଲାଭ ପାଇଁ ସେ ଅଧିକ କିଛି ପଦକ୍ଷେପ ଗ୍ରହଣ କଲା । ଅବସର ସମୟରେ କ୍ଳାନ୍ତି ମେଣ୍ଟାଇବା ପାଇଁ ଓ ନିଜ ମନକୁ ସୁସ୍ଥ ରଖିବା ପାଇଁ ଯାହା କିଛି ପନ୍ଥା ଉଦ୍ଭାବନ କଲା, ସେସବୁ ଆମୋଦପ୍ରମୋଦରେ ପରିଗଣିତ ହେଲା ।

ଆମ ମାନବସମାଜରେ ସାଧାରଣତଃ ଦୁଇପ୍ରକାର ମାନବଗୋଷ୍ଠୀ ଦେଖାଯାଉଥାନ୍ତି । ଯେଉଁମାନେ ସହରରେ ବାସ କରନ୍ତି, ସେମାନଙ୍କର ଜୀବନଯାପନ ପ୍ରଣାଳୀ ଗ୍ରାମରେ ବାସ କରୁଥିବା ଲୋକମାନଙ୍କଠାରୁ ଯଥେଷ୍ଟ ଭିନ୍ନ । ସହରବାସୀ ଓ ଗ୍ରାମବାସୀଙ୍କ ଚଳାଧାଳରେ ଆକାଶପାତାଳ ପ୍ରଭେଦ ଦେଖାଦେଉଥାଏ । ଗ୍ରାମବାସୀମାନେ ଅବସର ସମୟରେ ନବସି ନିଜକୁ ଅଧିକ କାର୍ଯ୍ୟକ୍ଷମ ଓ ଦୃଢ଼କରି ଗଢ଼ିତୋଳିବାପାଇଁ ଯେଉଁ ପନ୍ଥାମାନ ଗ୍ରହଣ କରିଥାନ୍ତି ତାହା ସହରବାସୀଙ୍କ ଅବଲମ୍ବିତ ପନ୍ଥାଠାରୁ ଯଥେଷ୍ଟ ଭିନ୍ନ । ଗ୍ରାମ୍ୟ ଜୀବନର ଆମୋଦପ୍ରମୋଦ ଉପରେ ଏକ ସିଂହାବଲୋକନ ଉକ୍ତ ପ୍ରବନ୍ଧର ପ୍ରଧାନ ଲକ୍ଷ୍ୟ ।

ଭାରତ ଗୋଟିଏ ଗ୍ରାମବହୁଳ ଦେଶ । ତାହାର ଲୋକସଂଖ୍ୟାର ପ୍ରାୟ ଶତକଡ଼ା ୮୫ ଜଣ କେବଳ ଗ୍ରାମରେ ବାସ କରନ୍ତି । କୃଷିକାର୍ଯ୍ୟ ହେଉଛି ସେମାନଙ୍କ ଜୀବନ ନିର୍ବାହର ପ୍ରଧାନ ପନ୍ଥା । ପ୍ରାତଃକାଳରୁ ସନ୍ଧ୍ୟା ସମୟ ପର୍ଯ୍ୟନ୍ତ କ୍ଷେତରେ କାର୍ଯ୍ୟବ୍ୟସ୍ତରହି ସେମାନଙ୍କ ଶରୀର ଅବସନ୍ନ ହୋଇପଡେ । ନିଜର ଶରୀର ଓ ମନରୁ କ୍ଳାନ୍ତି ଦୂରକରିବା ନିମିତ୍ତ ସେମାନେ ସ୍ୱତନ୍ତ୍ରାରୁ ଧର୍ମଭୁକ୍ତ ଆମୋଦପ୍ରମୋଦର ବ୍ୟବସ୍ଥା କରିଥାନ୍ତି । କାର୍ଯ୍ୟରତ ଥିବା ସମୟରେ ସେମାନେ ନିଜ କ୍ଳାନ୍ତି ଦୂରକରିବାପାଇଁ ସଂଗୀତର ଆଶ୍ରୟ ନେଉଥାନ୍ତି । ଗାଈଆଳପିଲ ଗାଈମାନଙ୍କୁ ଚରାଉଥିବା ସମୟରେ ବଂଶୀ ବଜାଇବାର ଦୃଷ୍ଟାନ୍ତ ରହିଛି । ଜମି ଚଷୁଥିବା ସମୟରେ କୃଷକ ବଳଦପାଛିରେ ଗୀତଗାଇ ନିଜକୁ ଖୁସି କରିବାକୁ ଭୁଲିଯାଇ ନାହିଁ । ତେଣୁ ସନ୍ଧ୍ୟା ସମୟରେ ଗୃହସ୍ଥମାନେ କ୍ଷେତ୍ରରୁ ପ୍ରତ୍ୟାବର୍ତ୍ତନ କରି ପରିଷ୍କାର ପରିଚ୍ଛନ୍ନ ହୋଇ ନିଜର ଇଷ୍ଟଦେବଙ୍କଠାରେ ଅନନ୍ୟ ପ୍ରଣତି ଜ୍ଞାପନ କରିବା ମଧ୍ୟ ବେଳେବେଳେ ସ୍ଥାନରେ ପରିଲକ୍ଷିତ ହୁଏ । ସମୟସମୟରେ ପୁରାଣପାଠକରି କର୍ମକ୍ଳାନ୍ତ ଜୀବନକାଳକୁ ସଞ୍ଜୀବିତ କରିବା ସଙ୍ଗେ-ସଙ୍ଗେ ନୂତନ ପ୍ରେରଣା ଓ ଉତ୍ସାହ ଲାଭକରେ । ଆଗେ ଗାଁମାନଙ୍କରେ ଅବସରବିନୋଦନ ପାଇଁ 'ଭାଗବତ ଟୁଙ୍ଗୀ'ର ବ୍ୟବସ୍ଥା ଥିଲା । ଏବେ ମଧ୍ୟ କେଉଁଠିକେଉଁଠି ଏହା ଦେଖାଯାଏ । ସେ ଟୁଙ୍ଗୀରେ ଗ୍ରାମର ଲୋକମାନେ ଏକତ୍ରହୋଇ ଗୀତା ମହାଭାରତ ଇତ୍ୟାଦିର ଚର୍ଚ୍ଚା କରନ୍ତି । ଯୁବପାଠକଗଣ ଏକତ୍ରହୋଇ ପଶାପାଲି, ତାସ୍ ଇତ୍ୟାଦି ଖେଳ ଆମୋଦ ଲାଭ କରିଥାନ୍ତି । ପ୍ରତିଦିନର ଆମୋଦପ୍ରମୋଦ ବ୍ୟବସ୍ଥା ବ୍ୟତୀତ, ବର୍ଷକର ଯାତ୍ରା ମହୋତ୍ସବ ଆଡ଼ମ୍ବର ସହକାରେ ପାଳନକରି ସେମାନେ ନିଜକୁ ପ୍ରଫୁଲ୍ଲ ରଖିଥାନ୍ତି । ଦଶହରା ପର୍ବ, ଦୋଳ ପୂର୍ଣ୍ଣିମା, ମକର ସଂକ୍ରାନ୍ତି ଇତ୍ୟାଦିରେ ନାଟଯାତ୍ରା, ଖେଳକୁଦର ବନ୍ଦୋବସ୍ତକରି ସାରା ଗ୍ରାମବାସୀ ଆନନ୍ଦରେ ମାତିଯାଆନ୍ତି । ଦେବୀଙ୍କ ସମ୍ମୁଖରେ ଝଣ୍ଡାଖେଳ ପ୍ରଦର୍ଶନ, ଲାଠିଖେଳ ପ୍ରଦର୍ଶନ ଆବାଳବୃଦ୍ଧବନିତା ସମସ୍ତଙ୍କ ମନରେ ଆନନ୍ଦ ସଞ୍ଚାର କରିଥାଏ । ଶିଶୁମାନେ ବାଗୁଡ଼ିଖେଳ, ଦୌଡ଼ ଇତ୍ୟାଦିରେ ମାତିଯାଆନ୍ତି । ଦୋଳପୂର୍ଣ୍ଣିମାରେ ରାଧା-କୃଷ୍ଣଙ୍କର ମିଳନ ଘଟାଇବା ଅବସରରେ ନିଜନିଜ ମଧ୍ୟରେ ରଙ୍ଗ ଖେଳିଥାନ୍ତି । କେତେଜଣ ପ୍ରତିଯୋଗୀ ମନଦେଇ ସନ୍ତରଣ, ଦୌଡ଼, କୁସ୍ତିକସରତ୍ ଇତ୍ୟାଦି ପ୍ରତିଯୋଗିତା କରି ସେଥିରୁ ଆନନ୍ଦ ପାଉଥାନ୍ତି । ଯୁବକମାନେ ଅଖଡ଼ାଘରମାନ କରି ସେଠାରେ ନାଟକ ଅଭିନୟର ଆୟୋଜନ କରନ୍ତି । ତାହା ସେମାନଙ୍କର ମନକୁ ପ୍ରଫୁଲ୍ଲ କରିବା ସଙ୍ଗେ ସଙ୍ଗେ ସାଙ୍ଗଠନିକ

ମନୋବୃତ୍ତିର ଚେତନା ସୃଷ୍ଟିକରେ । ଅବସର ସମୟରେ ଆଳସ୍ୟପରାୟଣ ହୋଇ ନବସି ସୁସ୍ଥ ଅଭ୍ୟାସ ବୃଦ୍ଧି କଲେ ଦେଶ ଓ ଜାତିର ସମୃଦ୍ଧି ସଙ୍ଗେ ସଙ୍ଗେ କର୍ମକ୍ଳାନ୍ତ ଜୀବନରେ ଅନେକ ଶାନ୍ତି ମିଳିଥାଏ । କଥାରେ ଅଛି—"An idle mind is a devil's workshop" । କିଛି କାର୍ଯ୍ୟ ନକରି ଚୁପ୍‌ଚାପ୍ ବସିରହିଲେ ମନରେ ଦୁଶ୍ଚିନ୍ତା ପ୍ରବେଶ କରେ । ତାହାର ଫଳରେ କୁକର୍ମ କରିବାରେ ମନ ସକ୍ରିୟ ହୋଇଉଠେ । ଏହି କଥାକୁ ହୃଦୟଙ୍ଗମ କରି ଗ୍ରାମର ଅଧିବାସୀମାନେ ତାଙ୍କର ଅବସର ସମୟରେ ଭିନ୍ନ ପ୍ରକାର ଉନ୍ନତମୂଳକ ଆମୋଦଦାୟକ କାର୍ଯ୍ୟରେ ଲିପ୍ତ ରହିବାକୁ ଭୁଲିଯାଇନାହାନ୍ତି । କେତେକ ଗ୍ରାମବାସୀ ବାଦ୍ୟବସ୍ତୁ କୀର୍ତ୍ତନ, ଜାଲବୁଣା ପ୍ରଭୃତି ପ୍ରିୟବସ୍ତୁ ଉପରେ ଅଭ୍ୟାସକରି ନିଜର ଆର୍ଥିକ ଅବସ୍ଥାକୁ ସ୍ୱଚ୍ଛଳ କରିବା ସଙ୍ଗେ ସଙ୍ଗେ ଆନନ୍ଦ ପାଇଥାନ୍ତି ।

ବର୍ତ୍ତମାନ ଯୁଗରେ ଯଥେଷ୍ଟ ପରିବର୍ତ୍ତନ ହୋଇଛି । ଲୋକେ ହଳଲଙ୍ଗଳରେ ଚାଷକରିବା ପରିବର୍ତ୍ତେ ଟ୍ରାକ୍ଟରରେ ଜମି ଚାଷକରିବା ଶିଖିଲେଣି । ଯୁଗର ପରିବର୍ତ୍ତନ ଅନୁସାରେ ମନୁଷ୍ୟର ଚିନ୍ତାଧାରା ମଧ୍ୟ ପରିବର୍ତ୍ତିତ ହୋଇଛି । ଏହି ବିଂଶ ଶତାବ୍ଦୀରେ ମନୁଷ୍ୟ ଚନ୍ଦ୍ର-ପୃଷ୍ଠରେ ଅବତରଣ କରି ନିଜର ବୁଦ୍ଧିମତ୍ତାର ପରିଚୟ ଦେଇଛି । ଯୁଗ ସହିତ ପାଦମିଳାଇ ଅବଶ୍ୟ ଗ୍ରାମ୍ୟଜୀବନରେ ଉନ୍ନତ ହୋଇନାହିଁ, ତଥାପି ଏହାର ଆମୋଦପ୍ରମୋଦ ପ୍ରଣାଳୀରେ ଅନେକ ପରିବର୍ତ୍ତନ ହୋଇଛି । ଭାରତର ଉନ୍ନତି ଗ୍ରାମବାସୀଙ୍କର ଉନ୍ନତି ଉପରେ ନିର୍ଭର କରୁଥିବାର ଆବଶ୍ୟକତା ଉପଲବ୍ଧି କରି ସରକାର ଗ୍ରାମ୍ୟଜୀବନ ଉପରେ ସୁତରାଂ ଦୃଷ୍ଟି ଦେଇଛନ୍ତି । ବର୍ଷୀୟଯୋଜନା ମଧ୍ୟରେ ଯେଉଁ ଗ୍ରାମଗୋଷ୍ଠୀ ଉନ୍ନୟନ ପରିକଳ୍ପନା କରାଯାଇଛି, ସେଥିରେ ଭାରତର ସର୍ବାଧିକ ନିରକ୍ଷର ନିରନ୍ନ ଗ୍ରାମ୍ୟଅଧିବାସୀ-ମାନଙ୍କର କର୍ମକ୍ଳାନ୍ତ ଜୀବନରେ ନବ ଆମୋଦ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ତାହାର ମାଧ୍ୟମରେ ସେମାନଙ୍କର ଦୃଷ୍ଟିକୋଣକୁ ଉନ୍ନତ ଓ ସଂପ୍ରସାରିତ କରିବା ନିମନ୍ତେ ପ୍ରଭୂତ ଆର୍ଥିକ ବ୍ୟବସ୍ଥା କରାଯାଇଛି । ପ୍ରତି ପଞ୍ଚାୟତ ମଧ୍ୟରେ ଗୋଟିଏ ଲେଖାଏଁ "ଅବସର-ବିନୋଦନ କେନ୍ଦ୍ର" ସ୍ଥାପନ କରି ସେଗୁଡ଼ିକୁ ସମ୍ବାଦପତ୍ର, ପ୍ରୌଢ ସାହିତ୍ୟ ଇତ୍ୟାଦି ଯୋଗାଇଦିଆଯାଉଛି । ସେସବୁ ପଢ଼ି, ସେଥିରେ ଥିବା ଶିଶୁଲେଖା, କବିତା, ଗଳ୍ପ, ଦେଶବିଦେଶ ଉପରେ ଆଲୋଚନା ସେମାନଙ୍କ ମନୋରଞ୍ଜନ କରିବା ସଙ୍ଗେ ସଙ୍ଗେ ଏକ ଭାବନାତ୍ମକ ମାନସିକ ଚେତନା ସୃଷ୍ଟି କରୁଛି । ଫଳରେ ସେମାନେ ଅଧିକ କର୍ମତତ୍ପର ହୋଇଉଠୁଛନ୍ତି । କାର୍ଯ୍ୟ କରିବାର ନୂତନ ପ୍ରେରଣା ଲାଭ କରୁଛନ୍ତି । ଗ୍ରାମମାନଙ୍କର ଶ୍ରୀ ଘର ଭୁବନରେ ପରିଣତ ହେଲଣି । ଆଧୁନିକ ଯୁଗର ପ୍ରତୀକ ରେଡ଼ିଓ, ଟେଲିଭିଜନ ଇତ୍ୟାଦି ସେଠାରେ ରଖାଯାଉଛି । ତାହା ମାଧ୍ୟମରେ ଗ୍ରାମବାସୀଙ୍କୁ କୃଷିକାର୍ଯ୍ୟମୂଳକ ଯୋଜନା ବିଷୟରେ ସମ୍ବାଦ ଚିନ୍ତାଧାରା ଜଣାଇବା ସଙ୍ଗେ ସଙ୍ଗେ ସରକାର ସେମାନଙ୍କ ଆମୋଦ-ପ୍ରମୋଦ ପାଇଁ ଯଥେଷ୍ଟ ଦୃଷ୍ଟି ଦେଇଛନ୍ତି । ରେଡ଼ିଓ ଓ ଟେଲିଭିଜନ୍ ସାହାଯ୍ୟରେ ଦାସ-କାଠିଆ, ପାଲା, ପକ୍ଷୀଗୀତ ପ୍ରଭୃତି କରାଯାଇ ସେମାନଙ୍କୁ ଖୁସି ରଖିବାର ଚେଷ୍ଟା କରା-ଯାଉଛି । ଜନ୍ମନିୟନ୍ତ୍ରଣମୂଳକ ଦୃଶ୍ୟ ସବୁ ଟେଲିଭିଜନ୍ ମାଧ୍ୟମରେ ପ୍ରଦର୍ଶନ କରି ତାଙ୍କର

ମନୋବଳକୁ ସୁଦୃଢ଼ କରିବା ସଙ୍ଗେ ସଙ୍ଗେ ଆମୋଦ ଦେଇପାରୁଛି । ରେ.ଡ଼ି.ଓ ସାହାଯ୍ୟରେ ରଙ୍ଗବେରଙ୍ଗ ଚଳଚ୍ଚିତ୍ର ଦେଖି ସେମାନେ ଯଥେଷ୍ଟ ଆନନ୍ଦ ପାଉଛନ୍ତି । ପାଶ୍ଚାତ୍ୟ ଦେଶର ନୃତ୍ୟଗୀତ ଟେଲିଭିଜନ୍ ଓ ରେଡ଼ିଓ ମାଧ୍ୟମରେ ଦେଖି ଓ ଶୁଣି ସେମାନେ ଆନନ୍ଦରେ ଝୁମି ଉଠୁଛନ୍ତି । ବାସ୍ତବିକ ବିଜ୍ଞାନର ଏହି ଅଦ୍ଭୁତ ସୃଷ୍ଟି ଗ୍ରାମ୍ୟଜୀବନକୁ ଅଧିକ କର୍ମମୁଖର ଓ ଚଳଚଞ୍ଚଳ କରିଦେଇଛି ।

ମଣିଷ ଜୀବନରେ ଆମୋଦ ପ୍ରମୋଦ ଯେ ଏକ ଅପରିହାର୍ଯ୍ୟ ଅଙ୍ଗ ତାହା ବୈଜ୍ଞାନିକ ଦୃଷ୍ଟିକୋଣରୁ ମଧ୍ୟ ବିଚାର କରାଯାଇପାରେ । ଏହାର ଅନ୍ତରାଳରେ ଶାରୀରିକ ପ୍ରକ୍ରିୟାରେ ବ୍ୟତିକ୍ରମ ଦେଖାଯାଏ । ଶରୀର ମଧ୍ୟରେ ଘଟୁଥିବା ସମସ୍ତ କାର୍ଯ୍ୟ ପାଇଁ ବିଭିନ୍ନ ପ୍ରକାର ତନ୍ତ୍ରର ସାହାଯ୍ୟ ଦରକାର ପଡ଼େ । ବିନା ତନ୍ତ୍ରରେ କୌଣସି କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇପାରେନାହିଁ । ପ୍ରତ୍ୟେକ ତନ୍ତ୍ରର କାର୍ଯ୍ୟ ଭିନ୍ନ ଭିନ୍ନ । କୌଣସି ତନ୍ତ୍ରର ଅଭାବରେ ବା ଅନୁପସ୍ଥିତିରେ ଅନ୍ୟ ଏକ ତନ୍ତ୍ର ସେହି କାର୍ଯ୍ୟ କରିପାରେ ନାହିଁ । କାର୍ଯ୍ୟରତ ଥିବା ସମୟରେ ଜୀବକୋଷରେ ଥିବା ବିଭିନ୍ନ ତନ୍ତ୍ର କ୍ରମାଗତ ଭାବରେ କାର୍ଯ୍ୟରତ ରହିଥାନ୍ତି । ଆଉ କେତେକ ତନ୍ତ୍ର ନିଷ୍କ୍ରିୟ ରହିଥାନ୍ତି । ସବୁବେଳେ କାର୍ଯ୍ୟରତ ରହୁଥିବା ତନ୍ତ୍ରଗୁଡ଼ିକର ଅବସର ଦରକାର ଓ ନିଷ୍କ୍ରିୟ ତନ୍ତ୍ରଗୁଡ଼ିକୁ କାର୍ଯ୍ୟକ୍ଷମ କରିବା ମଧ୍ୟ ଆବଶ୍ୟକ । ଆମୋଦପ୍ରମୋଦ ଉପଭୋଗ ସମୟରେ ମନୁଷ୍ୟ ସବୁ କଥାକୁ ଭୁଲିଯାଇଥାଏ । ଏହି ସମୟରେ ନିଷ୍କ୍ରିୟ ତନ୍ତ୍ରଗୁଡ଼ିକ ସକ୍ରିୟ ହୋଇ କାର୍ଯ୍ୟକରନ୍ତି ଓ ପୂର୍ବରୁ କାର୍ଯ୍ୟ କରୁଥିବା ତନ୍ତ୍ର ନିଷ୍କ୍ରିୟ ହୋଇଯାଆନ୍ତି । ଦୁଃଖ ଜନ୍ମାଉଥିବା ପ୍ରକ୍ରିୟା ବନ୍ଦ ହୋଇଯିବାରୁ ମଣିଷ ଶାନ୍ତି ଅନୁଭବ କରେ । ମାନସିକ ପରିବର୍ତ୍ତନ ଆସେ । ମନ୍ଦିର, ମସଜିଦ୍, ଗୀର୍ଜାଘରଗୁଡ଼ିକରେ ପ୍ରବେଶ କଲେ ଏହା ଘଟୁଥିବାରୁ ଲୋକେ ଏସବୁ ସ୍ଥାନକୁ ଯାଇଥାନ୍ତି । ସଙ୍ଗୀତ ଟକୀ ଓ ଥିଏଟରମାନଙ୍କରେ ବସି ପ୍ରବଚନ ଓ ନାଚତାମସା ଉପଭୋଗରେ ଲାଗିଗଲେ ଏ ପ୍ରକାର ଆଭ୍ୟନ୍ତରୀଣ ଶାରୀରିକ ପ୍ରକ୍ରିୟାରେ ପରିବର୍ତ୍ତନ ଆସେ । ମନ ପ୍ରଫୁଲ୍ଲ ରହେ । ଶାରୀରିକ ସୁସ୍ଥତା ଅପେକ୍ଷା ମାନସିକ ସୁସ୍ଥତା ସୁଖମୟ ଜୀବନ-ଧାରଣ କରିବାପାଇଁ ବେଶୀ ପରିମାଣରେ ଦାୟୀ । ତେଣୁ ଏ କ୍ଷେତ୍ରରେ ବିଚାର କରିବାକୁ ଗଲେ ଗ୍ରାମବାସୀ ହୁଅନ୍ତୁ ଅଥବା ସହରବାସୀ ହୁଅନ୍ତୁ ସମସ୍ତଙ୍କର ଆନନ୍ଦଲାଭ କରିବା ଆବଶ୍ୟକ—ଏହା ଅନସ୍ୱୀକାର୍ଯ୍ୟ ।

---

# ଆବର୍ଜନାର ପୁନର୍ବିନିଯୋଗ

[ଗାଁ ଦାଣ୍ଡ, ବାଡ଼ିବଗିଚ୍ଚ ଓ ଖେତଖମାର ଓଳାଇବାକୁ ହେବ । କିନ୍ତୁ ସେହି ଅଳିଆ ସବୁକୁ ବିନିଯୋଗ କରି ନ ଶିଖିଲେ ସେହି ଅଯଥା ଆବର୍ଜନାରେ ଲୋକେ ପୁଣି ଘାଣ୍ଟି ହେବେ । ଆବର୍ଜନା ଉପର ସମ୍ପଦ ହେବ, ପରିବେଶ ନିର୍ମଳ ରହିବ, ସ୍ୱାସ୍ଥ୍ୟହାନିର ଆଶଙ୍କା ଦୂର ହେବ ତାହାହିଁ ପ୍ରବନ୍ଧର ବିଷୟବସ୍ତୁ । ]

**(କ) ଆବର୍ଜନା କ'ଣ ?—**

ଆବର୍ଜନା କହିଲେ ଅଳିଆ, ଝାଡ଼ୁଆ, ମଇଳା, ଫିଙ୍ଗାଫୋପଡ଼ା ହେଉଥିବା ପଦାର୍ଥ ବା ବର୍ଜ୍ୟବସ୍ତୁମାନଙ୍କୁ ହିଁ ବୁଝାଏ । ଆମେ ସକାଳୁ ବିଛଣାରୁ ଉଠିବାଠାରୁ ଆରମ୍ଭ କରି ଦିନର ବିଭିନ୍ନ କାର୍ଯ୍ୟ କରି ପୁଣି ରାତିରେ ବିଶ୍ରାମ ନେବା ପର୍ଯ୍ୟନ୍ତ ଯେଉଁ ପଦାର୍ଥମାନଙ୍କୁ ବ୍ୟବହାର କରିଥାଉ, ବ୍ୟବହାର ସମୟରେ ଏବଂ ବ୍ୟବହାର ପରେ ବିଭିନ୍ନ ଅଂଶବିଶେଷକୁ ଆବର୍ଜନା ହିସାବରେ ପରିବେଶକୁ ନିକ୍ଷେପ କରିଥାଉ । ଭାରତରେ ଅଧିକାଂଶ ଗ୍ରାମ-ବାସୀଙ୍କର ପାଇଖାନା ବ୍ୟବସ୍ଥା ନାହିଁ ଓ ସହରର ଶତ ଗ୍ରାମବାସୀ ନିର୍ମଳ ପାନୀୟ ଜଳରୁ ବଞ୍ଚିତ । ଭାରତରେ ଘଟୁଥିବା ମୃତ୍ୟୁ ସଂଖ୍ୟାର ଅଧିକାଂଶରୁ ଅଧିକ ହେଲ ଛୋଟ ଛୋଟ ପିଲାଙ୍କ ମୃତ୍ୟୁ । ଏହା ପିଲାଙ୍କର ପାଞ୍ଚ ବର୍ଷ ବୟସ ଭିତରେ ଘଟିଥାଏ । ଖାଦ୍ୟାଭାବ, ଦାରିଦ୍ର୍ୟ, ଅପରିଷ୍କୃତ ପରିବେଶ ଓ ଦୂଷିତ ଜଳ ସେମାନଙ୍କ ମୃତ୍ୟୁର କାରଣ । ନିଷ୍କାସନ ନାଳରୁ ବୋହୁଥିବା ପଦାର୍ଥ ପାନୀୟ ଜଳକୁ ଦୂଷିତ କରି କାମଳ ପ୍ରଭୃତି ରୋଗର ପ୍ରାଦୁର୍ଭାବ ବଢ଼ାଇ ଦେଉଛି । ଆମର ଆବର୍ଜନା ପଦ୍ଧତି ଆମ ଦେଶର ସ୍ୱାସ୍ଥ୍ୟ ଓତପ୍ରୋତ ଭାବେ ଜଡ଼ିତ । ତେଣୁ ଆବର୍ଜନାକୁ ଠିକ୍ ଭାବେ ନିୟନ୍ତ୍ରଣ ତଥା ଉପଯୋଗ କରିବା ଆମର ସର୍ବାଦୌ କର୍ତ୍ତବ୍ୟ ।

ଓଡ଼ିଆରେ ପ୍ରବାଦ ଅଛି—

"ଆଜ ମଇଳା କାଲିକ ମାଟି
ପଅରଦିନକୁ ଚଟାଣିଟି ।"

ଅର୍ଥାତ୍ ଆଜିର ମଇଳା ଆବର୍ଜନା କାଲିକ ମାଟିରେ ପରିଣତ ହୋଇ ଥାଏ । ଏହା ସୂଚାଇଦିଏ ଯେ, ମଇଳା ବା ଅଳିଆ ପରିବେଶ ତନ୍ତ୍ରରେ ଏକ ବିକୃତାବସ୍ଥା ନୁହେଁ; ଏହା ଏକ ଗଠନାତ୍ମକ ପ୍ରକ୍ରିୟା । ତ୍ୟାଜ୍ୟ ବା ବର୍ଜ୍ୟବସ୍ତୁ ତ୍ୟାଗକର୍ତ୍ତାଙ୍କ ପାଇଁ ମଇଳା; କିନ୍ତୁ ଅନ୍ୟ କାହାପାଇଁ ଏହା ପୁଣି ଖାଦ୍ୟର ଉତ୍ସ । ମୃତ୍ତିକା-ଉଦ୍ଭିଦ-ପ୍ରାଣୀ ଏବଂ

ମୃତ୍ତିକା ମଧ୍ୟରେ ରହୁଥିବା ପ୍ରାକୃତିକ ଜୈବିକ ଚକ୍ର ପରିବେଶର ଭାରସାମ୍ୟ ରକ୍ଷାର ଏକ ପ୍ରଧାନ କାରଣ । ଅଥାତ୍ ମାଟିରୁ ସାରାଂଶ ନେଇ ମଞ୍ଜି ଗଛ ହୁଏ । ଗଛ ବଢ଼ିଲେ ପ୍ରାଣୀ-ମାନେ ଉପଯୋଗ କରନ୍ତି—ଗଛ ଏବଂ ପ୍ରାଣୀମାନଙ୍କର ଦେହାବଶେଷ, ପ୍ରାଣୀମାନଙ୍କର ଅଳିଆ ଆବର୍ଜନା ଏବଂ ନାଳନର୍ଦ୍ଦମା ମଇଳା ଇତ୍ୟାଦି ପଚି ପୁଣି ମାଟିର ସାର ଅଂଶରେ ପରିଣତ ହୁଏ । ଆବର୍ଜନାର ପୁନର୍ବ୍ୟବହାର ପରିବେଶରେ ଜୈବିକ ଚକ୍ରର ଏକ ପ୍ରାକୃତିକ ନିୟମ । ଅଳିଆ ଆବର୍ଜନାକୁ ଉପଯୁକ୍ତ ଉପାୟରେ ପୁନଃପ୍ରୟୋଗ କଲେ ସେଗୁଡ଼ିକ ପରିବେଶର ଜୈବିକ ପ୍ରଦୂଷଣ ଘଟେଇବା ସଙ୍ଗେ ସଙ୍ଗେ ପରିବେଶ ତତ୍ତ୍ୱର ମୂଲ୍ୟବାନ୍ ଜୈବିକସାରଗୁଡ଼ିକୁ ନଷ୍ଟ କରିଦେବ । କୃଷିପ୍ରଧାନ ଦେଶଗୁଡ଼ିକର ମାଟିରେ କମ୍ ପରିମାଣର ଜୈବିକ ଅଂଶ ରହୁଥିବାରୁ ଜୈବିକ ଅଳିଆ ବ୍ୟବହାର କଲେ ଏହି ସମସ୍ୟା ଅନେକ ପରିମାଣରେ ଲାଘବ କରାଯାଇପାରିବ । ଆବର୍ଜନାରୁ ଜୈବିକସାର ପ୍ରସ୍ତୁତ ଗ୍ରାମାଞ୍ଚଳ ଅଳିଆ ପୁନର୍ବ୍ୟବହାରର ଏକମାତ୍ର ପନ୍ଥା ନୁହେଁ, ଏହା ଅନ୍ୟାନ୍ୟ ଉପାୟରେ ମଧ୍ୟ ବ୍ୟବହାର କରାଯାଇପାରିବ । ଗାରଣ୍ଡାରେ ମିଳୁଥିବା ଅଳିଆ ଆବର୍ଜନାକୁ ଉପଯୁକ୍ତ ଭାବରେ ବ୍ୟବହାର କରି ସେଥିରୁ ମୂଲ୍ୟବାନ୍ ପଦାର୍ଥଗୁଡ଼ିକ ପୁଣି ଆମ ଦରକାରରେ ଲଗେଇବାପାଇଁ ପ୍ରସ୍ତୁତ କରାଯାଇପାରିବ ଏବଂ ତା' ସଙ୍ଗେ ସଙ୍ଗେ ପରିବେଶକୁ ସୁସ୍ଥ ରଖିହେବ, ତାହାହିଁ ଏ ପ୍ରବନ୍ଧର ପ୍ରଧାନ ଆଲୋଚ୍ୟ ବିଷୟ ।

**(ଖ) ଆମ ଆବର୍ଜନାର ପରିମାଣ ଏବଂ ପ୍ରକାରଭେଦ—**

ପରିବେଶ ପରିବ୍ୟାପ୍ତ କିନ୍ତୁ ଅପରିମିତ ନୁହେଁ । ଜନସଂଖ୍ୟାର ଦ୍ରୁତ ବୃଦ୍ଧି ସଙ୍ଗେ ସଙ୍ଗେ ପରିବେଶ ଅଧିକ ସଙ୍କୁଚିତ ହୋଇଆସୁଛି ଏବଂ ଅଳିଆ ଆବର୍ଜନାର ପରିମାଣ କ୍ରମେ ବଢ଼ିଚାଲିଛି । ୧୯୪୭ ମସିହାର ଜନସଂଖ୍ୟାକୁ ଶତକ ହିସାବରେ ଧରିଲେ ୧୯୮୦ରେ ୧୬୦ ଏବଂ ୨୦୦୦ ମସିହାରେ ୨୦୦ ପାଖାପାଖି ହେବାର ଆଶା କରାଯାଏ । ଆମେ ବ୍ୟବହାର କରୁଥିବା କାଗଜ ଜାତୀୟ ପଦାର୍ଥ ୧୯୪୭ରେ ୧୦୦ ହେଲେ, ୧୯୮୦ରେ ୨୮୦ ଏବଂ ୨୦୦୦ ମସିହାରେ ୭୦୦ରେ ପହଞ୍ଚିବ ବୋଲି ଗଣନା କରାଯାଇଛି । ସେହିପରି ଦୂଷିତଜଳ ୧୯୪୭ରେ ୧୦୦ ବୋଲି ଧରିଲେ ୧୯୮୦ରେ ତାହା ୪୦୦ ଏବଂ ୨୦୦୦ ମସିହାରେ ତାହା ୮୦୦ ହୋଇପାରେ ।

ଜଣେ ସହରବାସୀ ଦିନକୁ ପ୍ରାୟ ୩ କିଲୋଗ୍ରାମ ଅଳିଆ ଫିଙ୍ଗିଥାଏ । ଏଥିମଧ୍ୟରୁ ମଳ ୫୦୦ ଗ୍ରାମ, ଘରୋଇମଇଳା ୪୦୦ ଗ୍ରାମ, ନର୍ଦ୍ଦମା ମଇଳା ୧୦୦ ଗ୍ରାମ ଏବଂ ତରଳପଦାର୍ଥ ବୋତଲ୍‌ଟିନ ଓ ଅନ୍ୟାନ୍ୟ ଫିଙ୍ଗା ପଦାର୍ଥ ୫୦୦ ଗ୍ରାମ । ଏହାକୁ ହିସାବକୁ ନେଲେ ଜଣେ ଲୋକ ପ୍ରାୟ ବର୍ଷକୁ ୧.୧ ଟନ୍ ଆବର୍ଜନା ପରିବେଶକୁ ନିକ୍ଷେପ କରେ । ତେଣୁ ଏକ ଛୋଟ ପାଞ୍ଚଜଣିଆ ପରିବାରର ବର୍ଷକୁ ଆବର୍ଜନାର ପରିମାଣ ପ୍ରାୟ ୫.୫ ଟନ୍ ହେବ । ଏହି ଆବର୍ଜନାର ଏକ-ତୃତୀୟାଂଶ ଜୈବିକସାରରେ ପରିଣତ ହୋଇପାରିବ । ଗ୍ରାମ୍ୟ କମ୍ପୋଷ୍ଟଖତରେ ଶତକଡ଼ା ହିସାବରେ ୦.୭ ଭାଗ ଯବକ୍ଷାରଜାନ, ୦.୬୫ ଭାଗ ଫସଫରସ ଏବଂ ୧.୫ ଭାଗ ପଟାସ୍ ଥାଏ । ତେଣୁ ଏକ ୫ ଜଣିଆ ପରିବାର ଗ୍ରାମାଞ୍ଚଳରେ ଥାଇ

ଧାନର ସମସ୍ତ ଅଳିଆ ଆବର୍ଜନାକୁ ଖତରେ ପରିଣତ କଲେ ସେଥିରୁ ୩୪ କିଲୋଗ୍ରାମ ଯବକ୍ଷାରଜାନ, ୨୫ କି. ଗ୍ରା. ଫସ୍‌ଫରସ୍ ଏବଂ ୧୯୭ କି. ଗ୍ରା. ପଟାସ୍ ପାଇପାରିବ । ଏହି ଘରେଇମଇଳା ଉଦ୍‌ବୃତ୍ତ ଫସଲର ଅବଶିଷ୍ଟ ଅଂଶ—ଗୋବରଖତ, ବାଉଁଶ, କାଠ ଇତ୍ୟାଦି ହିସାବକୁ ନେଲେ ଜଣାଯାଏ ଯେ, ଏକ ୫ଜଣିଆ ପରିବାରର ୨ଗୋଟି ଗାଈଗୋରୁ ଥିଲେ ଆବର୍ଜନାରୁ ଜୈବିକ ବାଷ୍ପ ଜାଳେଣି ହିସାବରେ ଏବଂ ଜୈବିକ ଖତ ପ୍ରାୟ ୩ ଏକର ଜମି ଚାଷକରିବା ନିମନ୍ତେ ଯଥେଷ୍ଟ ହେବ । ଏଥିପାଇଁ ଜୈବିକ ମଇଳା ସମ୍ବନ୍ଧରେ ସଚେତନତା ତଥା ଏହାର ଉପଯୋଗିତା କଥା ଜାଣିବା ନିହାତି ଦରକାର ।

ଭାରତର ବାର୍ଷିକ ଅଳିଆ ଆବର୍ଜନାର ପରିମାଣ ୨୫୦୦ ନିୟୁତ ଟନ୍ । ସେଥିମଧ୍ୟରୁ ଗୋବର ଜାତୀୟ ମଇଳା ଦୁଇ-ତୃତୀୟାଂଶ । ଫସଲର ଅବଶିଷ୍ଟାଂଶ ଚାଂଗୋଇଖାନା ମଇଳା, ନାଳନର୍ଦ୍ଦମା ମଇଳା, ଘରୋଇ ମଇଳା ଇତ୍ୟାଦି ଏକ-ତୃତୀୟାଂଶ ବୋଲି ହିସାବରୁ ଜଣା-ପଡ଼ୁଛି । ଏହି ପରିମାଣରେ ସମୁଦାୟ ଜୈବିକ ଅର୍ଜନାରୁ ୩୦ରୁ ୩୫ ନିୟୁତ ଟନ୍ ଯବକ୍ଷାର, ଫସ୍‌ଫରସ ଏବଂ ପଟାସ୍ ମିଳିପାରିବ । ଭାରତରେ ବର୍ତ୍ତମାନ ବ୍ୟବହୃତ ହେଉଥିବା ଯବକ୍ଷାର, ଫସ୍‌ଫରସ ଏବଂ ପଟାସ୍‌ର ଏହା ଦୁଇଗୁଣରୁ ଯଥେଷ୍ଟ ବେଶୀ ।

ଆମ ଅଳିଆ ଆବର୍ଜନାରେ ବିଭିନ୍ନ ଜୈବିକ ପଦାର୍ଥ ସାଙ୍ଗକୁ ଲୁହା, ପ୍ଲାଷ୍ଟିକ, କାଚ ଇତ୍ୟାଦି ମଧ୍ୟ ରହିଥାଏ । ଏହିପରି ଅଜୈବିକ ପଦାର୍ଥଗୁଡ଼ିକ ଅଲଗା କରି ବିକ୍ରି ହୋଇ-ପାରିଲେ ସେଗୁଡ଼ିକର ପୁନଃବିନିଯୋଗ କରିହେବ । ମଇଳାଗଦାରେ ଥିବା ଲୁହାର ଶତକଡ଼ା ୫୦ ଭାଗ, ଏଲୁମିନିୟମ୍‌ର ଶତକଡ଼ା ୯୨ ଭାଗ, ତମ୍ବାର ଶତକଡ଼ା ୯୫ ଭାଗ, ଭଙ୍ଗାକାଚର ଶତକଡ଼ା ୧୦ ଭାଗ, ପ୍ଲାଷ୍ଟିକ୍‌ର ଶତକଡ଼ା ୯୭ ଭାଗ ଏବଂ କାଗଜର ଶତକଡ଼ା ୩୫ ଭାଗ ପୁଣି ଆମର ଦରକାର ହେବ । ଆଜିକାଲି ଗ୍ରେଟ ଗ୍ରେଟ ଠେଲାଗାଡ଼ିରେ ଫିଙ୍ଗା-ଫୋପଡ଼ା ହୋଇଥିବା ପ୍ଲାଷ୍ଟିକ, କାଚ ଏବଂ ଧାତୁଜାତୀୟ ଦ୍ରବ୍ୟଗୁଡ଼ିକ ସଂଗୃହୀତ ହେବାର ଦୃଶ୍ୟ ଏକ ନିତିଦିନିଆ କଥା । ଏହିପରି ବ୍ୟବସାୟରେ କୌଣସି ମୂଳଧନ ନଖଟାଇ ସମାଜର ନିମ୍ନଶ୍ରେଣୀର ଅନେକ ଲୋକ ସେମାନଙ୍କ ପରିବାରର ଭରଣପୋଷଣ ପାଇଁ ଏହାକୁ ଏକ ସହଜସାଧ୍ୟ ରୋଜଗାରର ପନ୍ଥା ହିସାବରେ ଗ୍ରହଣ କରିଛନ୍ତି । ଭୂମିହୀନ ଛିଟିଛିଆ ମୂଲିଆମାନେ କ୍ଷେତବାଡ଼ିରେ କାମ ମିଳୁନଥିବା ସମୟରେ ଏପରି ରୋଜଗାର ପନ୍ଥା ଅବଲମ୍ବନ କରିପାରିବେ । ଏପରି ଆବର୍ଜନାଗୁଡ଼ିକର ପୁନର୍ବିନିଯୋଗ ଫଳରେ ପରିବେଶ ନିର୍ମଳ ରହିବା ସଙ୍ଗେସଙ୍ଗେ ମୂଲ୍ୟବାନ୍ ଧାତବ ଏବଂ ଅନ୍ୟାନ୍ୟ ପଦାର୍ଥଗୁଡ଼ିକର ଅପଚୟ କିଛି ପରିମାଣରେ ରୋକାଯାଇପାରିବ । ପ୍ଲାଷ୍ଟିକ୍, କାଚ ଇତ୍ୟାଦି ପଦାର୍ଥଗୁଡ଼ିକ ପରିବେଶରେ ଜୀବଭୌତିକ ରାସାୟନିକ ଚକ୍ର ଦ୍ୱାରା ବିନିଯୋଗ ହୋଇପାରିବ ନାହିଁ । ତେଣୁ ସେଗୁଡ଼ିକ ବହୁଦିନ ଧରି ଆମ ଚାରିପାଖରେ ପଡ଼ିରହି ଆମର ପରିବେଶକୁ ବିକୃତ କରିବ । ସେଥିପାଇଁ ଏଭଳି ପଦାର୍ଥଗୁଡ଼ିକର ସଂଗ୍ରହ ଏବଂ ପୁନର୍ବିନିଯୋଗ ସମାଜ ତଥା ପରିବେଶ ପାଇଁ ମଙ୍ଗଳପ୍ରଦ ।

### (ଗ) ଆବର୍ଜନାର ପୁନର୍ବିନିଯୋଗ ପ୍ରଣାଳୀ—

ଆବର୍ଜନାର ପୁନର୍ବିନିଯୋଗ ପ୍ରଣାଳୀଗୁଡ଼ିକ ଏହାର ପ୍ରକାରଭେଦ, ପରିମାଣ, ବିନିଯୋଗ କରୁଥିବା ସଂସ୍ଥାର ଆର୍ଥିକ ପରିସ୍ଥିତି, ଉପଯୁକ୍ତ ପରିମାଣରେ ଜାଗା, ଦକ୍ଷ ବିଶେଷଜ୍ଞଙ୍କ ଉପରେ ନିର୍ଭରକରେ । ଆବର୍ଜନାକୁ ସାଧାରଣତଃ ନିମ୍ନଲିଖିତ ଛଅଗୋଟି ଉପାୟରେ ବିନିଯୋଗ କରାଯାଇଥାଏ । ସେଗୁଡ଼ିକ ହେଲା(୧) ସମୁଦ୍ର ବକ୍ଷକୁ ନିକ୍ଷେପ, (୨) ଅତ୍ୟଧିକ ତାପମାତ୍ରାରେ ଦହନ କରିବା, (୩) ଗୁଣ୍ଡ କରିବା ପ୍ରକ୍ରିୟା ଏବଂ ନାଳ ନର୍ଦ୍ଦମାକୁ ନିକ୍ଷେପ, (୪) ଜୈବିକ ପଚନ ବା ଜାରଣ ପ୍ରକ୍ରିୟା, (୫) ଖାଲଜାଗାଗୁଡ଼ିକୁ ଅଳିଆ ଆବର୍ଜନା ଦ୍ୱାରା ପୋତିବା, (୬) ଜୈବିକ ଓ ଅଜୈବିକ ପଦାର୍ଥଗୁଡ଼ିକର ବିଭକ୍ତିକରଣ ଏବଂ ଜୈବିକ ଆବର୍ଜନାରୁ ଇନ୍ଧନବାଷ୍ପ ଓ ଖତ ପ୍ରସ୍ତୁତିକରଣ । ତୁଳନାତ୍ମକ ଅନୁଶୀଳନ ଦ୍ୱାରା ଦେଖାଯାଇଛି ଯେ, ଖାଲଜାଗାଗୁଡ଼ିକୁ ଅଳିଆଦ୍ୱାରା ପୋତିବା ତଥା ଉନ୍ନତିଶୀଳ ଗ୍ରାମ୍ୟ ତଥା ସହରାଞ୍ଚଳରେ ଅତି ଜଣାଶୁଣା । ଖାଲଗୁଡ଼ିକରେ ଛଅଫୁଟ ବହଳର ଆବର୍ଜନା ପକାଇ ତା' ଉପରେ ଛଅଫୁଟ ଉଚ୍ଚ ମାଟି ପକାଯାଏ । ଜୈବିକ ପଦାର୍ଥଗୁଡ଼ିକ ମାଟିତଳେ ରହି କାଳକ୍ରମେ ପରିସ୍କାର ମାଟିରେ ମିଶିଯାଏ । ଆବର୍ଜନାରୁ ଖତ ପ୍ରସ୍ତୁତ ବିଷୟ ପରେ ବିଶଦଭାବେ ଆଲୋଚନା କରାଯାଇଛି । ଆଜିକାଲି ସରକାରଙ୍କର ଆର୍ଥିକ ସାହାଯ୍ୟ ଯୋଗୁ ବିଭିନ୍ନ ଗ୍ରାମ୍ୟ ଶିଳ୍ପଗୁଡ଼ିକ ଗଢ଼ିଉଠୁଛି । ଆବର୍ଜନାରୁ ବିଭିନ୍ନ ଜୈବିକ ଏବଂ ଅଜୈବିକ ପଦାର୍ଥଗୁଡ଼ିକ ସଂଗ୍ରହ କରି ଏବଂ ସେଗୁଡ଼ିକୁ ଗ୍ରାମ୍ୟ ଶିଳ୍ପରେ କଞ୍ଚାମାଲ୍ ହିସାବରେ ବ୍ୟବହାର କରାଯାଇପାରିବ । ଯଥା—(୧) ବୃକ୍ଷଜୀର ନଡ଼ା, ଆଖୁଛିଡ଼ା ଏବଂ ଫଳର ଅବଶିଷ୍ଟ ଅଂଶରୁ କାଗଜ (୨) ଧାନ ତଷୁରୁ ତେଲ, ଇଟା, ସିମେଣ୍ଟ (୩) ଅଳିଆ ଆବର୍ଜନାରୁ ଅତ୍ୟଧିକ ଚାପପ୍ରୟୋଗ କରି ସେଥିରେ ଇଟା ପରି କୋଠାବାଡ଼ି ନିର୍ମାଣ ଉପକରଣମାନ ତିଆରି ହୋଇପାରୁଛି । (୪) ଜୈବିକ ପଦାର୍ଥଗୁଡ଼ିକ ଶୁଖାଇ ଇନ୍ଧନ ଭାବରେ ଜଳାଯାଇ ଜେନେରେଟର ସାହାଯ୍ୟରେ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ, (୫) ଗ୍ରାମାଞ୍ଚଳରେ ଗୋବର, ଜାଳ, କାଠଗୁଣ୍ଡ, ଫସଲର ଅବଶିଷ୍ଟାଂଶରୁ ଗୋବର ଗ୍ୟାସ୍ ଉତ୍ପାଦନ ପାଇଁ ବ୍ୟବହାର କରାଯାଇପାରେ । ଗୋବରଗ୍ୟାସ୍ ପ୍ଲାଣ୍ଟ ସାହାଯ୍ୟରେ ଆବର୍ଜନାରୁ ମିଥେନ୍‌ଗ୍ୟାସ୍ ମିଳିପାରେ । ଏହି ବାଷ୍ପକୁ ରୋଷେଇ କରିବା, ଆଲୁଅ ଜାଳିବା ଏବଂ ଅନ୍ୟାନ୍ୟ କଳକବ୍‌ଜା ଚଳାଇବାରେ ବ୍ୟବହାର କରାଯାଇପାରେ । ହିସାବ କରି ଦେଖାଯାଇଛି ଯେ, ଭାରତରେ ଦରକାର ହେଉଥିବା କାଲୋରୀର ଶତକଡ଼ା ୭୦ ଭାଗ ଗୋବରରୁ ଏବଂ ୨୪ ଭାଗ ଫସଲର ଅବଶେଷରୁ ମିଳିଥାଏ । ଗୋବରକୁ ଶୁଖାଇ ଜାଳିବା ଦ୍ୱାରା ଏଥିରେ ଥିବା ଜୈବିକ ସାରାଂଶ ନଷ୍ଟହୋଇଯାଏ । ଗୋବରଗ୍ୟାସ୍ ପ୍ଲାଣ୍ଟ ବସାଇଲେ ଗୋବରରୁ ଇନ୍ଧନ ଜାଳେଣି ମିଳିବା ସଙ୍ଗେ ସଙ୍ଗେ ଜୈବିକସାର ମଧ୍ୟ ମିଳିଥାଏ । ବର୍ତ୍ତମାନ ଉଦ୍ଭାବିତ ହୋଇଥିବା ବିଭିନ୍ନ ଗୋବରଗ୍ୟାସ୍ ପ୍ଲାଣ୍ଟରେ ଗୋବର ସାଙ୍ଗକୁ କୁକୁଡ଼ା, ଛେଳି, ଘୁଷୁରି ତଥା ମନୁଷ୍ୟ ମଳ, ଚଣ୍ଡୁଆ ଦଳ, କଳମଦଳ ସମେତ ଅନ୍ୟାନ୍ୟ ଜୈବିକ ଆବର୍ଜନା ବ୍ୟବହାର

ଚଳାଯାଇପାରୁଛି । ଏପରିକି ପାଇଖାନା ସହିତ ଗୋବରଗ୍ୟାସ୍ ପ୍ଲାଣ୍ଟ ସଂଯୋଜିତ ହୋଇ କାର୍ଯ୍ୟକାରୀ ହେଉଛନ୍ତି ।

ଗୋବରଗ୍ୟାସ୍ ରନ୍ଧନ ଧୂଆଁ ବିହୀନ, ଦରକାର ମୁତାବକ ବ୍ୟବହାର, ସ୍ୱଳ୍ପମୂଲ୍ୟ ଏବଂ ଆମର ଅଳିଆ ଆବର୍ଜନାକୁ କଞ୍ଚାମାଲ ହିସାବରେ ବ୍ୟବହାର କରୁଥିବାରୁ ଏହା ଭାରତୀୟ ଗ୍ରାମ୍ୟଜୀବନ ପାଇଁ ଏକାନ୍ତ ଉପଯୋଗୀ, କଷ୍ଟସହିଷ୍ଣୁ ଏବଂ ସ୍ୱାସ୍ଥ୍ୟପ୍ରଦ । ଜଣେ ଲୋକର ଦିନକର ରୋଷେଇ ପାଇଁ ୩୦ ଘନଫୁଟ ଗୋବରଗ୍ୟାସ୍ ଦରକାର । ପରିବାର ପିଛା ପାଞ୍ଚୋଟି ଗାଈମଇଁଷିର ଗୋବରରୁ ୯୦ ଘନଫୁଟ ଗ୍ୟାସ୍ ଉତ୍ପାଦନ ହୋଇପାରେ । ପାଇଖାନାରୁ ଏତିକି ପରିମାଣରେ ଗୋବରଗ୍ୟାସ୍ ପାଇବାକୁ ହେଲେ ୯୦ ଜଣଙ୍କର ସାମୂହିକ ପାଇଖାନା ଦରକାର । ଗୋବରଗ୍ୟାସ୍ ବ୍ୟବହାର କଲେ ରୋଷେଇ ଅଳ୍ପ ସମୟରେ ହୋଇଥାଏ ଏବଂ କମ୍ ଖର୍ଚ୍ଚ ମଧ୍ୟ ହୁଏ । ବର୍ତ୍ତମାନ ଓଡ଼ିଶା ସରକାରଙ୍କର ଏକ ସଂସ୍ଥା ଏ ଦିଗରେ ବିଶେଷ ପ୍ରସାର ଏବଂ ପ୍ରଚାର କରିବାପାଇଁ ପ୍ରୟାସୀ ।

ଏହାଛଡ଼ା ଭାରତରେ ମିଳୁଥିବା ୧୦୦୦ ନିୟୁତ ଟନ୍‌ରୁ ଅଧିକ ଜନ୍ତୁଜାତୀୟ ଅଳିଆ ଆବର୍ଜନାରୁ ପ୍ରାୟ ୪୦୦ ନିୟୁତ ଟନ୍ ସୁରାସାର ପ୍ରସ୍ତୁତ କରାଯାଇପାରିବ । ବର୍ତ୍ତମାନ ଏହାର ଉତ୍ପାଦନ ପରିମାଣ ମାତ୍ର ୦.୩ ନିୟୁତ ଟନ୍ । ପେଟ୍ରୋଲ୍ ଏବଂ କୋଇଲା ପ୍ରଭୃତି ଜାଳେଣୀ ଜାଳେଣିର ଅତ୍ୟଧିକ ମୂଲ୍ୟବୃଦ୍ଧି ତଥା ସ୍ୱଳ୍ପତା ଦୃଷ୍ଟିରୁ ନିକଟ ଭବିଷ୍ୟତରେ ନବୀକରଣ-ଯୋଗ୍ୟ ସୁରାସାର ଜାଳେଣି ବ୍ୟବହାରପାଇଁ ବୈଜ୍ଞାନିକମାନେ ଏକମତ ହେଲେଣି ।

## (ଘ) ଆବର୍ଜନାରୁ ଖତ ପ୍ରସ୍ତୁତ—

### (୧) ଆମର ଜୈବିକ ଖତର ଆବଶ୍ୟକତା—

ଭାରତୀୟ ଗ୍ରାମାଞ୍ଚଳରେ ମିଳୁଥିବା ଅଳିଆ ଆବର୍ଜନାର ଶତକଡ଼ା ୭୦ରୁ ଅଧିକ ଅଂଶ ଜୈବିକ । ଅର୍ଥାତ୍ ଏହି ଆବର୍ଜନାଗୁଡ଼ିକ ଗାଁ ଗଣ୍ଡାରେ ବ୍ୟବହାର କରାଯାଉଥିବା ଉତ୍ପାଦନ କରାଯାଉଥିବା ବିଭିନ୍ନ ଜୈବିକ ପଦାର୍ଥର ଅଂଶବିଶେଷ । ଜୈବିକ ପଦାର୍ଥଗୁଡ଼ିକର ଉତ୍ପାଦନ ପାଇଁ ଚାଷଜମିରେ ପୁଷ୍ଟିକର ପଦାର୍ଥଗୁଡ଼ିକର ଜୈବିକ ଖତସାରରୁ ହିଁ ପୂର୍ଣ୍ଣଭାବେ ମିଳିଥାଏ । ରାସାୟନିକ ସାର ପ୍ରୟୋଗଦ୍ୱାରା ମୃତ୍ତିକାର କେତେଗୋଟି ଉପାଦାନ ଯଥା— ଯବକ୍ଷାରଜାନ, ଫସ୍‌ଫରସ୍ ଏବଂ ପଟାସ୍ ଇତ୍ୟାଦି ମିଳେ; ଅପରପକ୍ଷରେ ରାସାୟନିକସାରର ଉତ୍ପାଦନ ଏବଂ ମୂଲ୍ୟ ଅନ୍ୟଦେଶରୁ ଆମଦାନି କରାଯାଉଥିବା ପେଟ୍ରୋଲିୟମଜାତ ପଦାର୍ଥ ଉପରେ ନିର୍ଭର କରେ । ଭାରତଭଳି ବିକାଶଶୀଳ ଦେଶମାନଙ୍କର ଆର୍ଥିକ ଦୁର୍ବଳତା ଥିବା ଅବସ୍ଥାରେ କେବଳ ରାସାୟନିକ ସାର ଉପରେ ନିର୍ଭର କରିବା ସମ୍ଭବ ନୁହେଁ । ତା'ଛଡ଼ା ଜୈବିକସାରର ଉପଯୋଗିତା ରାସାୟନିକ ସାରଠାରୁ ଯଥେଷ୍ଟ ଅଧିକ । ୧୯୮୦-୮୧ ମସିହାରେ ଭାରତରେ ଶସ୍ୟ ଉତ୍ପାଦନ ମାଟିରୁ ୧୮ ନିୟୁତ ଟନ୍ ପୁଷ୍ଟିକର ପଦାର୍ଥଗୁଡ଼ିକ ଶୋଷଣ କରାଯାଇଥିଲା । ସେଥିମଧ୍ୟରୁ ଆମର କୃଷକମାନେ ରାସାୟନିକ ସାର ହିସାବରେ

୨.୫ ନିୟୁତ ଟନ୍ ଏବଂ ଜୈବିକ ଖତସାର ହିସାବରେ ୫ ନିୟୁତ ଟନ୍ ଚାଷଜମିରେ ବ୍ୟବହାର କରଥିଲେ । ଅର୍ଥାତ୍ ୧୮ ନିୟୁତ ଟନ୍ ପୁଷ୍ଟିକର ପଦାର୍ଥ ମାଟିରୁ ଶୋଷଣ କରାଯାଇ ମାତ୍ର ୧୦.୫ ନିୟୁତ ଟନ୍ ରାସାୟନିକ ଏବଂ ଜୈବିକସାରଦ୍ୱାରା ଭରଣା କରା-ଯାଇଥିଲା । କେବଳ ୧୯୮୦-୮୧ ମସିହାରେ ଭାରତର କୃଷିକ୍ଷେତ୍ରମାନଙ୍କରୁ ୭.୫ ନିୟୁତ ଟନ୍ ପୁଷ୍ଟିକର ପଦାର୍ଥ ବିଭିନ୍ନ ଫସଲ ମାଧ୍ୟମରେ ଶୋଷଣ କରାଯାଇ ପୁନର୍ବିନିଯୋଗ ହୋଇପାରିନଥିଲା ।

ଏହାଛଡ଼ା ଆମ ଦେଶରେ ଉପଯୁକ୍ତ ଜଳ ଏବଂ ମୃତ୍ତିକାସଂରକ୍ଷଣ ଅଭାବରୁ ବାର୍ଷିକ ପ୍ରାୟ ୮.୪ ନିୟୁତ ଟନ୍ ପୁଷ୍ଟିକର ପଦାର୍ଥ ମାଟିରୁ ଧୋଇହୋଇଯାଉଛି । ଜଙ୍ଗଲ ନାଶ, ରାସାୟନିକ ସାରର ଉପଯୋଗ, ପାଣି ଏବଂ କୃଷିଭିତ୍ତିକ ଅଳିଆ ଆବର୍ଜନାର ନିଷ୍କାସନର ଅଭାବ ଏସବୁ ପାଇଁ ଦାୟୀ ।

ଆମ୍ଭମାନଙ୍କର ଚାଷଜମିର ଜୈବିକ ପୁଷ୍ଟିକର ପଦାର୍ଥଗୁଡ଼ିକର ଅଭାବରେ ଏବେ ଅଧିକ ପରିମାଣରେ ରାସାୟନିକ ସାର, ପୋକମରା ଔଷଧ ପ୍ରୟୋଗ ହୋଇ ମଧ୍ୟ ଫସଲ ଉତ୍ପାଦନ ପୂର୍ବାପେକ୍ଷା ସ୍ଥିର କମ୍ବା କମିବାକୁ ଆରମ୍ଭ କଲାଣି । ୧୯୭୦-୭୫ ମସିହାରେ ଉନ୍ନତ ଧରଣର ଗହମ ଉତ୍ପାଦନ ପ୍ରତି ହେକ୍ଟର (୨.୫ ଏକର) ପିଛା ୭.୪ ଟନ ଥିଲାବେଳେ ୧୯୮୦-୮୫ ମସିହାରେ ଏହା ୫.୫ ଟନ୍‌କୁ କମିଆସିଲା । ଏହା ମଧ୍ୟରେ ରାସାୟନିକ ସାର ଏବଂ ପୋକମରା ଔଷଧ ବ୍ୟବହାର ୧୦ ଗୁଣରୁ ଅଧିକ ହୋଇସାରିଲାଣି । ଏଭଳି ପରିଣତିର ଏକମାତ୍ର କାରଣ ହେଉଛି ବିକାଶମୁଖୀ ଦେଶଗୁଡ଼ିକ ବିକଶିତ ଦେଶର ଅନୁକରଣ ଓ ଅନୁସରଣ କରିଚାଲିଛନ୍ତି ।

ଜୈବିକସାରର ଉତ୍କୃଷ୍ଟତା ସମ୍ବନ୍ଧରେ ନିମ୍ନଲିଖିତ କେତେଗୋଟି ବିଷୟ ନିହାତି ଜାଣିବା ଦରକାର—

(୧) ଜୈବିକ ସାର ଜମିର ପୁଷ୍ଟିସାଧନ କରିବା ସଙ୍ଗେ ସଙ୍ଗେ ମାଟିର ସାଧାରଣ ଗଠନ, ଜଳଧାରଣ ଶକ୍ତି, ଜୀବାଣୁ, କବକ ଇତ୍ୟାଦି ମୃତ୍ତିକାସ୍ଥ ଜୀବମାନଙ୍କର ସଂଖ୍ୟା, ମୃତ୍ତିକା ସଂରକ୍ଷଣ, ବାୟୁ ସଞ୍ଚାଳନ ଇତ୍ୟାଦି ନିୟନ୍ତ୍ରଣ କରିଥାଏ । ରାସାୟନିକ ସାରଗୁଡ଼ିକ ମାଟିର ଏସବୁ ଗୁଣଗୁଡ଼ିକୁ ନଷ୍ଟକରିପାରନ୍ତି ।

(୨) ପୃଥିବୀର ବର୍ଷକୁ ପ୍ରାୟ ଦୁଇ ନିୟୁତ ହେକ୍ଟର ଅର୍ଥାତ୍ ପାଞ୍ଚ କୋଟି ଏକର ଉର୍ବର ଜମି ଉପଯୁକ୍ତ ସଂରକ୍ଷଣ ଅଭାବରୁ ମୃତ ମୃତ୍ତିକାରେ ବା ମରୁ ମାଟିରେ ପରିଣତ ହେଉଛି । ଜୈବିକ ସାର ପ୍ରୟୋଗ କରି ଉପଯୁକ୍ତ ସଂରକ୍ଷଣ ବ୍ୟବସ୍ଥା କଲେ ମରୁମାଟିର ପୂର୍ବାବସ୍ଥା ପୁଣି ଫେରିଆସିବ ।

(୩) ଜୈବିକ ସାର ପ୍ରୟୋଗ ହେଉଥିବା ଶସ୍ୟ କ୍ଷେତରେ ରୋଗ ପୋକ ମଧ୍ୟ କମ୍ ବୋଲି ଜଣାଯାଇଛି । କାରଣ ଜୈବିକ ସାର ନପାଇ ସେହି ଜୀବମାନେ ଫସଲ ନଷ୍ଟ କରିଥାଆନ୍ତି ।

ତେଣୁ ଜୈବିକ ଖତର ପୁନଃବ୍ୟବହାର ବିକାଶଶୀଳ ଦେଶମାନଙ୍କପାଇଁ ମଙ୍ଗଳକର ।

## (୬) ଖତ ପ୍ରସ୍ତୁତର ବିଭିନ୍ନ ପ୍ରଣାଳୀ—

ଭାରତରେ ସାଧାରଣତଃ ଦୁଇଟି ଉପାୟରେ ଖତ ପ୍ରସ୍ତୁତ କରାଯାଏ—

### ଇନ୍ଦୋର ଖତ ପ୍ରସ୍ତୁତ ପ୍ରଣାଳୀ—

ଏଥିରେ ୩ ମିଟର x ୩ ମିଟର x ୧ ମିଟରର ଖାତ ଇଟାରେ ପ୍ରସ୍ତୁତ କରାଯାଏ । ଏହି ଖାତରେ ୧୦ ସେଣ୍ଟିମିଟର ଆବର୍ଜନା ସାରର ମଇଳା, ଗୋବର ଇତ୍ୟାଦି ୧୦ ସେଣ୍ଟିମିଟର ମୋଟାରେ ସ୍ତର ସ୍ତର ହୋଇ ଜମାଯାଏ । ଏହା ଦେଢ଼ମିଟର ଉଚ୍ଚତା ପର୍ଯ୍ୟନ୍ତ ଜମାକରାଯାଇଥାଏ । ଜମା ହୋଇଥିବା ଆବର୍ଜନାଗୁଡ଼ିକ ନିୟମିତ ଭାବରେ ଓଲଟପାଲଟ ହେବା ଦରକାର । ତା'ପରେ ସେଗୁଡ଼ିକୁ ଇଟାରେ ତିଆରି ହୋଇଥିବା ଖାତରୁ ବାହାରକରାଯାଇ ମାଟି ଉପରେ ଗଦା କରାଯାଏ । ପାଣି ଅଂଶ, ଗୋବର ଏବଂ ଓଲଟପାଲଟ ପ୍ରକ୍ରିୟା ପରିବର୍ତ୍ତନକୁ ଅଧିକ ଶୀଘ୍ର କରାଇ ଥାଆନ୍ତି । ମାତ୍ର ଛଅ ମାସ ମଧ୍ୟରେ ଏପରି ଭାବରେ ଖତ ପ୍ରସ୍ତୁତ କରାଯାଇପାରେ ।

### ବାଙ୍ଗାଲୋର ଖତ ପ୍ରସ୍ତୁତ ପ୍ରଣାଳୀ—

ଏଥିରେ ମାଟି ଖୋଳି ୧୦ ମିଟର ଲମ୍ବ × ୧.୫ ମିଟର ଓସାର ଏବଂ ୧.୫ ମିଟର ଗଭୀରଆ ଖାତ କରାଯାଏ । ସେଥିରେ ଅଳିଆ ଆବର୍ଜନା ଏବଂ ଗୋବର ଇତ୍ୟାଦି ମଇଳା ସ୍ତର ସ୍ତର କରି ଗଦା କରାଯାଏ । ଶେଷରେ ଖାତ ପୁରିଆସିଲେ ବେଳକୁ ଉପରେ ୧୫ ସେଣ୍ଟିମିଟର ମାଟିର ସ୍ତର ଘୋଡ଼ାଇ ଦିଆଯାଏ । ଏହି ଉପାୟରେ ୪ରୁ ୫ ମାସ ମଧ୍ୟରେ ଖତ ପ୍ରସ୍ତୁତ ହୋଇଥାଏ ।

ଇନ୍ଦୋର ପ୍ରଣାଳୀରେ ପ୍ରଧାନତଃ ବାୟୁବ୍ୟ ପଚନ (aerobic decomposition) ଏବଂ ବାଙ୍ଗାଲୋର ପ୍ରଣାଳୀରେ ପ୍ରଧାନତଃ ଅବାୟୁବ୍ୟ ପଚନ (anaerobic decomposition) ଦ୍ୱାରା ଖତ ପ୍ରସ୍ତୁତ ହୋଇଥାଏ । ଇନ୍ଦୋର ପ୍ରଣାଳୀରେ ଓଲଟପାଲଟ ହେଉଥିବାରୁ ଏବଂ ମାଟି ଉପରେ ଗଦା କରାଯିବାରୁ ଏହାକୁ ବାୟୁବ୍ୟ ପଚନ କୁହାଯାଏ । ଅନ୍ୟ ପକ୍ଷରେ ବାଙ୍ଗାଲୋର ପ୍ରଣାଳୀରେ ମାଟି ମଧ୍ୟରେ ଖାତ ଏବଂ ଓଲଟପାଲଟ ପ୍ରକ୍ରିୟା ନଥିବାରୁ ଏହାକୁ ଅବାୟୁବ୍ୟ ପଚନ କୁହାଯାଏ ।

ଖତଗଦା ଉପରେ ଛାତି ବା ଘୁଡ଼ଣି ନଦେବାଦ୍ୱାରା ଗାଁଗଣ୍ଡାରେ ପ୍ରସ୍ତୁତ ଅଧିକାଂଶ ଖତରୁ ସାରାଂଶ ଧୋଇହୋଇ କେବଳ ଛେଡ଼ାତାଳ ଯାହା ପଡ଼ିରହୁଛି । ଏହି ଖତ ଗଦାରୁ ଧୋଇଯାଉଥିବା ପାଣି ପୁଣି ପୋଖରୀ, କୂଅ, ନଦୀ ଜଳକୁ ଦୂଷିତ କରୁଛି । ପରୀକ୍ଷା କରି ଦେଖାଯାଇଛି ଯେ ଖୋଲା ଗୋବରଗଦାରୁ ଅତି କମ୍‌ରେ ଶତକଡ଼ା ୩୦

ଖତ ଉପରେ ବର୍ଷାପାଣି ଏବଂ ଖରାଦ୍ୱାରା ନଷ୍ଟହୋଇଥାଏ । ଏତଦ୍ୱାରା ଖୋଲାସ୍ଥାନରେ ଯବକ୍ଷାରଜାନ ପରିମାଣ ମଧ୍ୟ କମିଯାଇଥାଏ । ତେଣୁ ଖତଗଦାଗୁଡ଼ିକ ଛାମୁଣି ମଧ୍ୟରେ ହେବା ଦରକାର । ଯଦି ଛାମୁଣି ନହୋଇପାରେ ତେବେ ଗଦା ଉପରେ ତଳକୁ ବାଲିକର ମୋଟା ସ୍ତରର ଏକ ଢାଙ୍କୁଣି ଓ ଗୋବରର ପ୍ରଲେପ ଦେଇଦେଲେ ରଖିବା ଦରକାର । ଏତଦ୍ୱାରା ଗାଈ ମଇଁଷି ଗୃହପାଳିତ ପଶୁମାନଙ୍କର ମୂତ୍ର ଆଦି ମିଶି ପାରିବେ, ଜୈବିକ ସାର ଶୀଘ୍ର ପ୍ରସ୍ତୁତ ହୋଇପାରେ । କୌଣସି ଜୈବିକ ପଦାର୍ଥ ପଚିବା ଆରମ୍ଭ କଲେ ପଚନ କିମ୍ବା ଘଟାଉଥିବା ଜୀବାଣୁ ଓ ବୀଜାଣୁ ଇତ୍ୟାଦି ମାଟିରୁ ଅଳ୍ପ ପରିମାଣର ଯବକ୍ଷାରଜାନ ଗ୍ରହଣ କରନ୍ତି । ମାଟିରେ ତଥା ଅଳିଆ ଆବର୍ଜନାରେ ଯଦି ଏହି ଉପଯୋଗୀ ଯବକ୍ଷାରଜାନ କମ୍ ଥାଏ ତେବେ ପଚନ କିମ୍ବା ପୂର୍ଣ୍ଣରୂପେ ହୋଇପାରେନାହିଁ; କାରଣ ପଚନ କିମ୍ବା ଘଟାଉଥିବା ଜୀବମାନଙ୍କର ସଂଖ୍ୟା ବଢ଼ିପାରେ ନାହିଁ ।

**(ଖ) ଖତ ପ୍ରସ୍ତୁତ ଏବଂ ଉପଯୋଗର କେତୋଟି ସାଧାରଣ ନିୟମ—**

(୧) ଖତଗଦାରେ ଅତ୍ୟଧିକ ପାଣି କିମ୍ବା ଏକଦମ୍ ପାଣି ନ ରହିଲେ ତାହା ପଚନ କ୍ରିୟାରେ ବାଧାସୃଷ୍ଟି କରଇଏ । ତେଣୁ ପାଣି ଏପରି ପରିମାଣରେ ରହିବ ଯାହାକି ମିଶ୍ରିତ ଅଳିଆ ଆବର୍ଜନାକୁ ହାତରେ ଚିପିଧରିଲେ ହାତରୁ ପାଣି ଝରିଯାଉନଥିବ କି ଏକଦମରେ ଶୁଖିଲା ଖଡ଼ଖଡ଼ ହୋଇନଥିବ ।

(୨) ଜମିରୁ ଖତରେ ଖାଲି ପାଳ ଘାସ ଇତ୍ୟାଦି ଶର୍କରାଜାତୀୟ ପଦାର୍ଥ ରହିଲେ ତାହା ଖତ ହେବାକୁ ଡେରିକରେ । କାରଣ ଏଥିରେ ଯବକ୍ଷାରଜାନ ପରିମାଣ ଅତ୍ୟନ୍ତ କମ୍ ଥାଏ । ପଚନକ୍ରିୟା ଜୈବିକ ପଦାର୍ଥର ଅଙ୍ଗାରକ (carbon) ଏବଂ ଯବକ୍ଷାରଜାନ (nitrogen) ଅନୁପାତ ଉପରେ ଅଧିକ ପରିମାଣରେ ନିର୍ଭର ହୋଇଥାଏ । ଗୋବର, ମଳ, ଦୁଗ୍ଧଜାତୀୟ ପଦାର୍ଥ, ଗୋମୂତ୍ର ଇତ୍ୟାଦିରେ ଅଧିକ ଯବକ୍ଷାରଜାନ ଥିବାରୁ ଏଗୁଡ଼ିକର ମିଶ୍ରଣ ପଚନକ୍ରିୟାକୁ ଶୀଘ୍ର କରାଇଥାଏ । ସାଧାରଣ ଅଳିଆ ଆବର୍ଜନାର ମିଶ୍ରଣରେ ଅଙ୍ଗାରକ ଏବଂ ଯବକ୍ଷାରଜାନ ଅନୁପାତ ୮୦, ୫୦ ଓ ୨୦ ହିସାବରେ ଥିଲେ ତାହା ଖତ ହେବ ପାଇଁ ଯଥାକ୍ରମେ ୩୦, ୨୦ ଓ ୧୫ ଦିନ ଲାଗିବ । ଅଙ୍ଗାରକ ଏବଂ ଯବକ୍ଷାରଜାନ ଅନୁପାତ ୨୦ ପାଖାପାଖି ଥିଲେ ଜୀବାଣୁମାନେ ସେଥିରୁ ଖାଦ୍ୟାଂଶ ଆହରଣ କରିପାରିବେ ।

(୩) ଖତଗଦାରେ ଆବର୍ଜନା ସ୍ତର ସ୍ତର ହୋଇ ରହିବା ସମୟରେ ସୁପରଫସଫେଟ୍ ଛିଞ୍ଚାଯାଉଥିଲେ ଖତପ୍ରସ୍ତୁତ କାର୍ଯ୍ୟ ଶୀଘ୍ର ହୋଇଥାଏ ଏବଂ ଯବକ୍ଷାରଜାନ କମ୍ ପରିମାଣରେ ନଷ୍ଟ ହୋଇଥାଏ ବୋଲି ଜଣାପଡ଼ିଛି । ପ୍ରତି ଫୁଟ୍ ଆବର୍ଜନାରେ ୨୫ ସେ.ମି. ବା ଫୁଟିଏ ଆବର୍ଜନା (୨୦ ସେ.ମି.)ରେ ୨୫୦ ଗ୍ରାମ୍ ସୁପରଫସଫେଟ୍ ମିଶିବା ଦରକାର ।

(୬) ଖତଗଦାରେ ଅତ୍ୟଧିକ ପତ୍ରମାନଙ୍କର ପାଉଁଶ ପକାଇଲେ ତାହା ଯବକ୍ଷାରଜାନ ନଷ୍ଟ ହେବାରେ ସାହାଯ୍ୟ କରିଥାଏ । ତେଣୁ ପାଉଁଶ ଗଦାକୁ ଖତଗଦାରେ ନ ଦେଇ ଅଲଗା ରଖାହେବା ଦରକାର । ଅତ୍ୟଧିକ ପାଣିଅଂଶ ହୋଇଗଲେ ପାଉଁଶ ଦେଇ ଜାରଣ ପ୍ରକ୍ରିୟାକୁ ବନ୍ଦ କରାଯାଏ । ପାଉଁଶକୁ ଜମିରେ ଖତ ସାଙ୍ଗରେ ବ୍ୟବହାର କଲେ ମାଟିର ବାୟୁଚଳନରେ ସାହାଯ୍ୟ କରିଥାଏ ।

(୭) ନୂଆ ଖତ ବ୍ୟବହାର ୩-୪ ସପ୍ତାହ ପୂର୍ବରୁ ଗୋବର, ସବୁଜସାର, ନଡ଼ା ଜମିରେ ଦିଆଯିବା ଉଚିତ୍ । ଏହା ଫଳରେ ପଚନକ୍ରିୟା ପାଇଁ ଯଥେଷ୍ଟ ସମୟ ମିଳେ । ଗଦାର ଖତ ଫସଲ ଲଗାଇବା ଠିକ୍ ପୂର୍ବରୁ ଦିଆଯିବା ଦରକାର । କାରଣ ସେଥିର ସାରାଂଶ ସଙ୍ଗେ ସଙ୍ଗେ ଫସଲ ଗ୍ରହଣ କରିବା ଅବସ୍ଥାରେ ଥାଏ ।

**(୪) ଜୀବ ପ୍ରଯୁକ୍ତିବିଦ୍ୟା ଏବଂ ଅପଘଟକମାନଙ୍କୁ ଖତ ପ୍ରସ୍ତୁତରେ ଉପଯୋଗ—**

ଜୀବ ପ୍ରଯୁକ୍ତିବିଦ୍ୟା (Bio techonology)ରେ ଅଣୁଜୀବ ଜୀବମାନଙ୍କୁ ଉପଯୋଗ କରି ଜୈବିକ ପ୍ରାକୃତିକ ପ୍ରକ୍ରିୟାକୁ ଅଧିକ ଫଳପ୍ରଦ କରାଯାଇପାରୁଛି । ପଚନକ୍ରିୟାରେ ସେହିଭଳି ଅପଘଟକମାନେ ଖତ ପ୍ରସ୍ତୁତ କାର୍ଯ୍ୟକୁ କମ୍ ସମୟ ମଧ୍ୟରେ କରିପାରୁଛନ୍ତି । ଭାରତରେ ହରିୟାନା କୃଷି ବିଶ୍ୱବିଦ୍ୟାଳୟର ଅଣୁଜୀବ ବିଜ୍ଞାନର କବକମାନଙ୍କ ସମ୍ବନ୍ଧରେ ଗବେଷଣା ହୋଇ ଜଣାଯାଇଛି ଯେ, କବକ ଟ୍ରାଇକରସ୍ ସ୍ପାଇରାଲିସ୍ (Trichurus spiralis), ଆସ୍ପରଜିଲସ (Asperigillus sp.) ଏବଂ ପାଇସିଲୋମାଇସିସ୍ ଫ୍ୟୁସିସ୍ପୋରସ୍ (Paeolomyces fusispores) ଧାନନଡ଼ା, ଗହମନଡ଼ା ଇତ୍ୟାଦି ସହିତ ମିଶାଇ ଖତକଲେ ଶତକଡ଼ା ୨୦ରୁ ୪୦ ଭାଗ କମ୍ ସମୟରେ ଖତ ହୋଇପାରିବ ।

କବକମାନଙ୍କ ଛଡ଼ା ଜିଆ ବା କେଞ୍ଚୁଆମାନେ ମଧ୍ୟ ଖତଗଦାରେ ଛଡ଼ାହେଲେ ଖତ ୨୫ରୁ ୫୦ଭାଗ କମ୍ ସମୟରେ ହୋଇପାରୁଛି ବୋଲି ଲେଖକଙ୍କ ଗବେଷଣାରୁ ଜଣାପଡ଼ିଛି । ଜିଆମାନେ ଖତଗଦାରେ ରହି ଭୌତିକ (Physical), ରାସାୟନିକ (Chemical) ଏବଂ ଜୈବିକ ( Biological ) ପ୍ରକ୍ରିୟାଦ୍ୱାରା ଖତ ତିଆରିରେ ସାହାଯ୍ୟ କରନ୍ତି । ସେମାନେ ଜଳ, ମୂତ୍ର ଏବଂ ମଇଳା ମାଧ୍ୟମରେ ଖତଗଦାରେ ଯବକ୍ଷାରଜାନ ଦେଇ ପଚନ କ୍ରିୟାକୁ ଅଧିକ ପ୍ରଖର କରିଥାନ୍ତି । ଜିଆମାନଙ୍କର ପାଚକରସରେ ଫସଲ ଅବଶେଷରେ ରହିଥିବା ସେଲୁଲୋଜଜାତୀୟ ଶର୍କରାକୁ ହଜମ କରିବା ଶକ୍ତି ରହିଅଛି । ଏବେ ଆମେରିକା, ଇଂଲଣ୍ଡ, କାନାଡ଼ା ଏବଂ ଜାପାନ ଇତ୍ୟାଦି ଦେଶରେ କୃଷୀମାନେ ଖତଗଦାରେ ଜିଆ-ଗୁଡ଼ିକ ଉତ୍ପାଦନରେ ଉତ୍କୃଷ୍ଟ ଖତ ପାଉଛନ୍ତି । ଭାରତରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଜୀବ-ବିଜ୍ଞାନ ବିଭାଗରେ ଏବଂ ବାଙ୍ଗାଲୋରସ୍ଥ ପ୍ରାଣୀବିଜ୍ଞାନ ବିଭାଗରେ ଜିଆର ଖତ ପ୍ରସ୍ତୁତ ଏବଂ ଜମିରେ ତାର ପ୍ରୟୋଗ ବିଷୟରେ ଅଧିକ ଗବେଷଣା ଚାଲିଅଛି । ଓଡ଼ିଶାରେ ମିଳୁଥିବା ଜିଆଗୁଡ଼ିକ ମଧ୍ୟରୁ ଲମ୍ପିଟୋ ମାଉରିଟି (Lampito mauritti), ଡ୍ରାଭିଡ଼ା ୱିଲିସି ( Drawida Willisi ) ଓ ପେରିଓନିକ୍ସ ଏକ୍ସକାଭେଟସ୍ (Perionyx excavatus) ଇତ୍ୟାଦି ଜିଆ ଖତ ପ୍ରସ୍ତୁତରେ ଅଧିକ ଉପକାରୀ । ୧୯୮୪ ମସିହା ଡିସେମ୍ବର

ମାସରେ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ପ୍ରଫେସର ମାଧବଚନ୍ଦ୍ର ଦାଶଙ୍କ ନେତୃତ୍ୱରେ ଫଳିଆ-ଆବର୍ଜନାର ପଚନ ଏବଂ ଜିଆ ପ୍ରଯୁକ୍ତି ରଞ୍ଜନ ଉପରେ ଏକ କାର୍ଯ୍ୟ ପାଠଚକ୍ର ହୋଇ ଜୈବିକ ଖତ ଏବଂ ଜିଆମାନଙ୍କୁ କୃଷିକାର୍ଯ୍ୟରେ ନିୟୋଗ କରିବାକୁ ସରକାରଙ୍କୁ ସୁପାରିଶ କରାଯାଇଛି । କୃଷୀମାନେ ଖତଗଦାରେ ଅଳ୍ପ କେତୋ ଜିଆ ଛାଡ଼ିଦେଲେ ସେମାନେ ବର୍ଷକରେ ବହୁଗୁଣିତ ହୋଇଯିବେ । ଏକ ଟନ୍ ଆବର୍ଜନା ଧରୁଥିବା ଖାତରେ ୨୦୦୦ ପ୍ରାପ୍ତବୟସ୍କ କର୍ମିଷ୍ଠ ମାଇବୃଷ୍ଟି ଜିଆ ଛାଡ଼ିଲେ ସେମାନେ ଚାରିମାସ ମଧ୍ୟରେ ଏହାକୁ ଖତକରି ସେମାନଙ୍କ ସଂଖ୍ୟାକୁ ଅଳ୍ପସମୟରେ ଦ୍ୱିଗୁଣିତ କରିପାରିବେ । ଜିଆଗୁଡ଼ିକୁ ମାଛ, କୁକୁଡ଼ାଙ୍କୁ ଖାଇବାକୁ ଦିଆଯାଇପାରିବ । ଆମ ଦେଶରେ ଜିଆକୃଷିର ପ୍ରସାର ଫଳରେ ଆବର୍ଜନା ବିନିଯୋଗ ହେବା ସଙ୍ଗେ ସଙ୍ଗେ ପୁଷ୍ଟିକର ପ୍ରୋଟିନସାର ଖାଦ୍ୟ ତଥା ପ୍ରଥମ ଖତ ପ୍ରସ୍ତୁତ କରାଯାଇପାରିବ ।

ଆମ ଫଳିଆ ଆବର୍ଜନାକୁ ସୁଷ୍ଠୁରୂପେ ପୁନର୍ବିନିଯୋଗ କରିପାରିଲେ ସେଥିରୁ ଆମେ ସୁନାପରି ମୂଲ୍ୟବାନ୍ ଖତ, ଗ୍ୟାସ ଇତ୍ୟାଦି ପ୍ରସ୍ତୁତ କରିପାରିବା ସଙ୍ଗେ ସଙ୍ଗେ ପରିବେଶକୁ ସୁସ୍ଥ ରଖିପାରିବା । ସେଥିପାଇଁ ସଂକ୍ଷେପରେ ଲେଖକଙ୍କ ଭାଷାରେ—

ଆମ ମଇଳା ସୁନାକୁ ସରି
ଆସ ରଖିବା ସାଇତି କରି । (୧)
ମଇଳା ଯାକେ ପକାଇଦେଲେ
ପଚନ କଲେ ସୁନା ଫଳେ । (୨)
ଘର ଫଳିଆ ଖତଗଦାରେ
ପଚି ସଢ଼ିବ ହେବ ଝଟରେ । (୩)
ଗାଈ ଗରୁଙ୍କ ମଇଳା ସବୁ
ଗୋବରଗ୍ୟାସ ପଶିବା ସ୍ୱେପା । (୪)
କ୍ୟୁ'ପଚ ଗଦା ଲୁଗା କତର
ଭୁଲା କନା ଅଖ ହାଣ୍ଡି ଖପର । (୫)
ଫଖା କାଗଜ ଧୂଳି ପତର
ନଡ଼ା କୁଟା ଓ ମାଟି ଗୋବର । (୬)
ଖତଗଦାରେ ପାଣି ଢୋବର
ଓଲଟପାଲଟ ମହିରେ କର । (୭)
ଶତକ ଦିନେ ହୋଇବ ଖତ
ଜୈବିକ ସାର ଗୁଣ ବହୁତ । (୮)
ମଇଳା ଖାଦ୍ୟ ମାଟି ମାଆର
ବଂଶ ବଢ଼ଇ ମାଟି ଜବର । (୯

ଜୈବ୍ୟ ଛାରୁ ମିଳାଣ୍ଡ ଅତ
ସୂକ୍ଷ୍ମଜୀବ ବୃଦ୍ଧି ଯେ ସନ୍ଧିପଦୀ ।
କଏ ଗୁଣ୍ଡକରେ କଏ ଦ୍ରକମ
କଏ ଓଲଟାଏ କଏ ନରମ । (୧୧)

ମାଟି ପରିବାରେ ଜେତେ ଯେ ଜବ
ସମବାୟ ଫସ୍ଥା ନଥାଇଭେଦ । (୧୨)
ନାହିଁ ବଡ଼ ସାନ ବାଛବିଚାର
ମଣିଷ ଶିଖିବା କଥା ବେସ୍ତର । (୧୩)
ଜମିରେ ବଢ଼ିଲେ ମାଟି ଉର୍ବର
ସୃଷ୍ଟି ଚଟେ, ହୁଏ ତା'ର ସଦାର । (୧୪)
ଜୈବିକ ସାର ଦାମ୍ ବହୁତ
ଜମିକୁ ଲାଭକରେ ସେହୁତ । (୧୫)
ମଇଳା ଖତ ସୃଷ୍ଟିର ମିତ
ଫସଲ ଯୋଗାଏ ଜମି ବହୁତ । (୧୬)
ସୁଲଭ ସାର ମଇଳା ସଫା
ସୃଷ୍ଟି ପଇସା ଘରେ ସାଇତା । (୧୭)

---